# ପ୍ରସଙ୍ଗ : ଧର୍ମ ଓ ଶିକ୍ଷା

ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା



ପ୍ରସଙ୍ଗ : ଧର୍ମ ଓ ଶିକ୍ଷା— ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା, ପ୍ରକାଶକ— ଶ୍ରୀ ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ୍, ବିନୋଦ ବିହାରୀ, କଟକ-୭୫୩ ୦୦୨, ପ୍ରଥମ ପ୍ରକାଶ — ୧୯୯୩, ଲେଖକଙ୍କ ଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ, ମୁଦ୍ରଣ — ରେନେସାଁ ପ୍ରିଣ୍ଟରସ୍, ନୂଆବଜାର, କଟକ-୭୫୩ ୦୦୪



**Prasanga : Dharma O Sikshya** by Dr. K. C. Behera, Published by Sri S. Pradhan, Friends Publishers, Binodbihari, Cuttack-2, Copyright reserved by the Author, First Edition—1993, Printed by M/s. Renaissance Printers, Nayabazar, Cuttack-4. *Price Rs. 25.*

# ଉତ୍ସର୍ଗ-ଲିପି

ଆୟୁଷ୍ମତୀ ଶୀତୁ ( ଅନନ୍ୟାଶ୍ରୀ ବେହେରା )

ଓ

ଆୟୁଷ୍ମାନ୍ ବୁଟ୍ଟୁ ( ଅନନ୍ୟତେଜ ବେହେରା )

ନିକଟ ଭବିଷ୍ୟତ୍‌ରେ ତମର ଆଖି ଫିଟିଗଲେ, ଏ ସଂସାର ଓ ସମାଜ-ଜୀବନକୁ ଦେଖିବା ପାଇଁ ତମ ଦୁହିଙ୍କ ସକାଶେ ଏଇ ଗବାକ୍ଷଟିଏ ଦେଇଗଲି ।

—ତମର ବେହେରେ

# ଅଧ୍ୟାପକ ଡକ୍ଟର ବେହେରଙ୍କ ଅନ୍ୟାନ୍ୟ ରଚନା

## ପ୍ରବନ୍ଧ-ସମାଲୋଚନା

ପ୍ରଗତି ସାହିତ୍ୟ (୧୯୫୮), କଥା ସାହିତ୍ୟ (୧୯୬୦), ଅଶ୍ଳୀଳତା ବିପକ୍ଷରେ (୧୯୬୬), ଓଡ଼ିଆ ଉପନ୍ୟାସ (୧୯୬୮), କେତୋଟି ସାହିତ୍ୟିକ ଅଭିଭାଷଣ (୧୯୭୦), ଅଧ୍ୟାପକର ବେଦନା (୧୯୭୨), ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ (୧୯୭୪), ନାଟ୍ୟ ସାହିତ୍ୟ ପରିଚୟ (୧୯୭୮), ତତ୍ତ୍ୱ ଓ ଚରିତ (୧୯୭୯), ମଧ୍ୟସ୍ଥ ବାଣୀ (୧୯୮୦), ସଂଘାନ ସନ୍ଦର୍ଭ (୧୯୮୧), ଧର୍ମ ଅଧର୍ମ କଥା (୧୯୮୨), ପ୍ରସଙ୍ଗ : ଗଳ୍ପ-ଉପନ୍ୟାସ (୧୯୮୯), ବୀକ୍ଷା ବିଚିତ୍ରା (୧୯୯୧)

## ଗଳ୍ପ ଗ୍ରନ୍ଥ

ସୃଷ୍ଟିର ସ୍ୱପ୍ନ (୧୯୫୮), ଗୋପନ ପତ୍ର (୧୯୬୨), ଭଙ୍ଗ ଓ ପୋଡା (୧୯୬୭), 'ବେଦୀ' ଇତ୍ୟାଦି ଗଳ୍ପ (୧୯୭୧), 'ନାରୀ' ଏକ ନଦୀର ନାମ (୧୯୭୬), ଶୀତରେଖ (୧୯୮୨), ନାରୀମେଧ (୧୯୮୯)

## କବିତା

ଗ୍ଳାସ କପ୍‌ରେ ଝଡ଼ (୧୯୫୩), ଯୋଜନା-ଯଜ୍ଞ (୧୯୫୯), ୫୪–ଡାଉନ୍‌ବାଲ ଲେନ୍ (୧୯୫୯), ପିପାସାର ପ୍ରାର୍ଥନା (୧୯୬୮), ଲଘୁପଞ୍ଚକ (୧୯୮୩)

## ଏକାଙ୍କିକା

ଯଥା ନଳସ୍ୟ ଦମୟନ୍ତୀ (୧୯୫୯)

## ଶିଶୁ ରଚନା

କଥାଟିଏ କହୁଁ ଗୀତଟିଏ ଗାଉଁ (୧୯୬୮), ଗପସପ (୧୯୮୧)

## ସଂକଳିତ ଓ ସଂପାଦିତ ଗ୍ରନ୍ଥ

କବିଶେଖର ଚିନ୍ତାମଣି [୧୯୬୩], ମୋଗଲ ତାମସା [୧୯୬୬], କିଶୋରଚନ୍ଦ୍ରାନନ୍ଦ ଚମ୍ପୂ [୧୯୭୭], ଏ ଯୁଗର ଗଦ୍ୟ ଚୟନ [୧୯୭୮], ପ୍ରୀତି ସୁଧାକର [୧୯୭୯], ବୈଦେହୀଶ ବିଳାସ [୧୯୮୦], କଳାବତୀ [୧୯୮୧], ଫୁଲମଣି ଓ କରୁଣାର ବିବରଣ [୧୯୮୨], ଗୋପାଳକୃଷ୍ଣ ପଦାବଳୀ-ପରିକ୍ରମା [୧୯୮୫]

# ସୂଚୀପତ୍ର





---

ଅଙ୍ଗସଜ୍ଜ–ରେଖା :

୧ । ପ୍ରଚ୍ଛଦସଜ୍ଜା—ଶିଳ୍ପୀ ଶ୍ରୀ ଅସିତ ମୁଖାର୍ଜି

୨ । ଗ୍ରନ୍ଥାଦ୍ୟର ଅଲଙ୍କରଣ—ବିରଜା ବଜ୍ରଚାର ଫଟୋଚିତ୍ର

# ସଂଶୋଧନୀ

| ପୃଷ୍ଠା | ଧାଡ଼ି | ଭୁଲ୍ ହୋଇଛି | ଠିକ୍ ହେବ |
|---|---|---|---|
| ୩ | ୭ | ଅଧକ | ଅଧିକ |
| ୮ | ୧୭ | କଛଯାଇପାରେ | କରଯାଇପାରେ |
| ୧୧ | ୨୫ | କୀଛରେ | କାଳରେ |
| ୧୪ | ୭ | କେବେ ବେବେ | କେବେ କେବେ |
| ୧୫ | ୧୫ | ଶତାବ୍ଦାରେ | ଶତାବ୍ଦୀରେ |
| ୧୬ | ୧୦ | ଘୋଗଣା | ଘୋଷଣା |
| ୩୧ | ୩ | ଖାଜା ମୋଇନୁଦ୍ଦିନ୍ | ଖ୍ୱାଜା ମୋଇନୁଦ୍ଦିନ୍ |
| ୪୬ | ୨୦ | ଆଁନେଇ ନେବ | ଆଗେଇ ନେବ |
| ୪୭ | ୧୪ | ବାଭସ୍ସ | ବୀଭତ୍ସ |
| ୫୭ | ୪ | ମହାରଜା କୃଷ୍ଣଚନ୍ଦ୍ର | ଶ୍ରୀ କୃଷ୍ଣଚନ୍ଦ୍ର |
| ୬୭ | ୧୩ | ସଂଖା | ସଂଖ୍ୟା |
| ୬୮ | ୩ | ଗୁରୁତ୍ନ | ଗୁରୁତ୍ୱ |
| ୭୦ | ୧ | ପ୍ରତ୍ରେ୍ୟକ | ପ୍ରତ୍ୟେକ |
| ୭୦ | ୭ | ଶିକ୍ଷାଳବଦ୍ଧ | ଶିକ୍ଷାଇବଦ୍ଧ |
| ୭୮ | ୨୬ | ଅଧାପକମାନଙ୍କ | ଅଧ୍ୟାପକମାନଙ୍କ |
| ୮୪ | ୨୫ | ସେତେ ଇେସା | ସେତେ ପଇସା |
| ୯୩ | ୯ | ଗୁମର ଫେଇଚା | ଗୁମର ଫେଇବା |
| ୯୫ | ୮ | ବୈଷୟକ ବା ପ୍ରଯକ୍ତି-ବିଦ୍ୟାର | ବୈଷୟିକ ବା ପ୍ରଯୁକ୍ତିବିଦ୍ୟାର |

# ଭୂମିକା

ଏବେ ସଂଗଠିତ ଆନୁଷ୍ଠାନିକ ଧର୍ମଗୁଡ଼ିକ ଗୁରିଆଡ଼େ ଯେପରି ଧର୍ମ-ତ୍ୟାଗ କରିବାରେ ଲଗିଛନ୍ତି, ଉଚ୍ଚ ଶିକ୍ଷାର ଉଜ୍ଜ୍ୱଳ ଶିଖା ସେହିପରି ଫିକା ପଡ଼ିବାରେ ଲଗିଛି । ମୋର ଗ୍ରରିପାଖରେ ସମାଜର ଏ ଦୁଇଟି ଶକ୍ତିର ଅଧୋଗତି ମୁଁ ବଡ଼ ଦୁଃଖର ସହ ଲକ୍ଷ୍ୟ କରୁଛି ।

ହେତୁ ହେଲ ଦିନରୁ ବିଶ୍ୱ-ଦେବତା ପୂଜା, ଧର୍ମାଦି ବ୍ୟାପାର ମୋ ମନରେ କୌତୂହଳ ଓ ଜିଜ୍ଞାସା ସୃଷ୍ଟି କରିଥିଲା । ମୁଁ ଭବୁଥିଲି— ଏ ସବୁର ମାନେ କଣ ! କାହିଁକି ଏହା କରଯାଉଛି ! ଆତ୍ମୀୟ ସ୍ୱଜନମାନଙ୍କୁ ଏହା ଉପରେ ବିଭିନ୍ନ ପ୍ରଶ୍ନ ପଗ୍ରରି ମୋର ମନ ବୋଧ ହେଉଥିଲି କିଛି ଉତ୍ତର ପାଇ ନାହିଁ । ଛାତ୍ର-ଜୀବନରେ କମ୍ୟୁନିଜିମ୍ ପ୍ରତି ଆକୃଷ୍ଟ ହେଲ ପରେ ଏହି ଦ୍ୱିଧାଭବ ଓ ଜିଜ୍ଞାସାବାଦ ଆହୁରି ବଳବତ୍ତର ହୋଇଛି । ବୟସ-ବୃଦ୍ଧି ସଙ୍ଗେ ସଙ୍ଗେ ହୃଦୟଙ୍ଗମ କଲି— ଈଶ୍ୱର ବିଶ୍ୱାସ ଓ ଆଧ୍ୟାତ୍ମିକ ଭବ ହେଉଛି ଆନୁଷ୍ଠାନିକ ଧର୍ମ-ନିରପେକ୍ଷ । ଆମେ ଆନୁଷ୍ଠାନିକ ଧର୍ମର ବାହାରେ ରହି ମଧ୍ୟ ଈଶ୍ୱର ବିଶ୍ୱାସ ଓ ଆଧ୍ୟାତ୍ମିକ ଭବରେ ଉଦ୍‌ବୁଦ୍ଧ ହୋଇ ପାରିବା—ଭଦ୍ର ଓ ନୀତିନିଷ୍ଠ ଜୀବନ ବଞ୍ଚି ପାରିବା । ତାହାହେଲେ ସଂଗଠିତ ଆନୁଷ୍ଠାନିକ ଧର୍ମର ଆଉ ଆବଶ୍ୟକତା କଣ ?

ମୋର ଏହି ଧାରଣା ଓ ଉପଲବ୍ଧି ୧୯୭୯ ମସାହା 'ବିରଜା ବକ୍ତୃତା'ରେ ପ୍ରକାଶ କରିଥିଲି । ସେହି ବକ୍ତୃତାଟି ପରିମାର୍ଜିତ ଓ ପରିବର୍ଦ୍ଧିତ ଆକାରରେ 'ଧର୍ମ-ଅଧର୍ମ କଥା' (୧୯୮୨) ନାମ ଧରି କଟକସ୍ଥ ରେନେସାଁ ପବ୍ଲିକେସନ୍‌ସ୍ ପକ୍ଷରୁ ଗ୍ରନ୍ଥାକାରରେ ପ୍ରକାଶ ପାଇଥିଲା । ଗ୍ରନ୍ଥଟି ବହୁଦିନ ହେଲ ପୁସ୍ତକ-ବିପଣୀରୁ ନିଃଶେଷ ହୋଇ ଯାଇଥିବାରୁ ଏବଂ ଦେଶର ସାଂପ୍ରତିକ ପରିସ୍ଥିତିରେ ବକ୍ତୃତାଟିର ବିଶେଷ ପ୍ରାସଙ୍ଗିକତା ଥିବାରୁ ଏଠାରେ ତାହା ଉଚ୍ଚ ଶିକ୍ଷା ବିଷୟକ ମୋର 'ଗଜପତି ସ୍ମାରକୀ ବକ୍ତୃତା' ସହ ଉପସ୍ଥାପିତ କରଯାଉଛି ।

୧୯୯୦ ମସାହାରେ ପାରଳାଖେମୁଣ୍ଡିସ୍ଥ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜରେ 'ଉଚ୍ଚ ଶିକ୍ଷାର ଉଚ୍ଚବାଚ', ସପ୍ତମ 'ଗଜପତି ସ୍ମାରକୀ ବକ୍ତୃତା'ରେ ପଠିତ ହୋଇ-ଥିଲା । ତତ୍ ପୂର୍ବରୁ ଓ ପରେ ଏହାର ବିଭିନ୍ନ ଅଂଶ ଭଦ୍ରକର ସାପ୍ତାହିକ ପତ୍ରିକା 'ବିଶେଷ ଖବର' ପୃଷ୍ଠାରେ (୧୯୮୯-୯୦ର ବିଭିନ୍ନ ସଂଖ୍ୟା) କିସ୍ତିଓ୍ୱାରିରେ ପ୍ରକାଶ ପାଇଥିଲା । ଏବେ ଆବଶ୍ୟକ ପରିମାର୍ଜନ ଓ ପରିବର୍ଦ୍ଧନ ପୂର୍ବକ ଏହାର ଗ୍ରନ୍ଥ-ରୂପ ପ୍ରକାଶ କରଯାଉଛି ।

ଜଣେ ଶିକ୍ଷକ ବା ଅଧ୍ୟାପକ ହେବାର ଲକ୍ଷ୍ୟ ଘେନି ସ୍ଵାଧୀନତା ପରେ ପରେ ଜୀବନ ଆରମ୍ଭ କରିଥିଲି । ସ୍ୱଗ୍ରାମର ବେସରକାରୀ ହାଇସ୍କୁଲରେ ପ୍ରାୟ ୫ ମାସ, ବେସରକାରୀ ଭଦ୍ରକ କଲେଜରେ ପ୍ରାୟ ୧୫ ବର୍ଷ, ରାଜ୍ୟର ବିଭିନ୍ନ ସରକାରୀ କଲେଜରେ ପ୍ରାୟ ୨୦ ବର୍ଷ ଏବଂ ଭଦ୍ରକ ବେସରକାରୀ ମହିଳା କଲେଜରେ ୨ ବର୍ଷ—ଏହିପରି ୩୭ ବର୍ଷ ସକ୍ରିୟ ଶିକ୍ଷକତା କରିଥିବା କାଳରେ ମୋର ବେଶ୍ ଉପଲବ୍ଧି ହୋଇଛି ଯେ—ଶିକ୍ଷକତା ଭଳି ସମ୍ମାନଜନକ, ସାଧୁ ଓ ସାର୍ଥକ କାର୍ଯ୍ୟ ସମାଜରେ ଖୁବ୍ କମ୍ ରହିଛି । ଖାସ୍ ସେଇଥିପାଇଁ କାର୍ଯ୍ୟଟି କଷ୍ଟକର ଓ ଗୁରୁତ୍ୱପୂର୍ଣ୍ଣ । ମଣିଷ ଗଢ଼ିବା ବା ଦ୍ୱିଜତ୍ୱ ଦେବା କଣ ସହଜ କଥା ? ଏବେ ଆମ ଦେଶରେ ଠିକ୍ ଭବରେ ମଣିଷ ଗଢ଼ା ହେଉ ନ ଥିବାରୁ ତ ଅମଣିଷଙ୍କ ଦାଉରେ ଜୀବନ ଯନ୍ତ୍ରଣାକ୍ତ ହୋଇ ଉଠିଛି ! ଯାହାହେଉ, ସେହି ଶିକ୍ଷକତାକୁ ଏବେ ଅନେକେ ସହଜ ଓ ଗୁରୁତ୍ୱହୀନ କାର୍ଯ୍ୟ ବୋଲି ମନେ କରୁଥିବାରୁ ମୂଳରୁ ଚୂଳଯାଏଁ ଆମର ଶିକ୍ଷା ବ୍ୟବସ୍ଥା ଦୁର୍ବଳ ହୋଇ ପଡ଼ିଲାଣି । ବିଶେଷତଃ ଯେଉଁ ଉଚ୍ଚ ଶିକ୍ଷା ସହିତ ମୋର ସମ୍ପର୍କ ଅଧିକ୍, ତାହା ଏକ ପ୍ରକାର ପ୍ରହସନରେ ପରିଣତ ହେଲଣି । ଏହା ଦ୍ୱାରା ପ୍ରାଣରେ ଯେଉଁ ପୀଡ଼ା ପାଇଛି—ମନରେ ଯେଉଁ ପ୍ରତିକ୍ରିୟା ଆସିଛି, ତାହା ବିଭିନ୍ନ ସଭସମିତିରେ ଭଷଣ ତଥା ଲେଖା-ଲେଖି ମାଧ୍ୟମରେ ପ୍ରକାଶ କରିଛି । 'କଲେଜ ଶିକ୍ଷାରେ ସମାଜ ସେବା', 'ଶାନ୍ତିନିକେତନ ଶିକ୍ଷା', 'ଶିକ୍ଷାର ଆଭିମୁଖ୍ୟ', 'ଏବର ଶିକ୍ଷା କି ଶୋଷଣର ପ୍ରତୀକ ?' ପ୍ରଭୃତି ପୂର୍ବ ପ୍ରକାଶିତ ମୋର ଆଲୋଚନା-ପ୍ରବନ୍ଧାବଳୀ ଏହାର ଉଦାହରଣ । ଏଥି ମଧ୍ୟରୁ ଶେଷୋକ୍ତ ପ୍ରବନ୍ଧଟି (୧୯୭୫) ବର୍ତ୍ତମାନର ସମାଜ ଓ ଶିକ୍ଷିତଶ୍ରେଣୀଙ୍କ ପାଇଁ ପ୍ରାସଙ୍ଗିକ ଓ ଉପଯୋଗୀ ଥିବାରୁ 'ଉଚ୍ଚ ଶିକ୍ଷାର ଛେଚବାଟ' ଅଭିଭଷଣର ପରିଶିଷ୍ଟ ରୂପେ ତାହା ସ୍ଥାନିତ କରଯାଉଛି ।

ଏବର ଉଚ୍ଚ ଶିକ୍ଷା ଓ ଆନୁଷ୍ଠାନିକ ଧର୍ମ ସଂପର୍କରେ ମୋର ଧ୍ୟାନ-ଧାରଣା, ଚିନ୍ତା-ଚେତନା ସହୃଦୟ ପାଠକ-ପାଠିକାଙ୍କ ନିକଟରେ ବିଗ୍ଭରଯୋଗ୍ୟ ହେବ ବୋଲି ବିଶ୍ୱାସ । ଏ ଗ୍ରନ୍ଥ ପ୍ରକାଶ କାଳରେ 'ବିଶେଷ ଖବର'ର କର୍ମକର୍ତ୍ତା ଶ୍ରୀ ଭଗବାନ ନାୟକ ବର୍ମା ଓ ଶ୍ରୀ ଐର ଖାରବେଳ ସ୍ୱାଇଁ, ରେନେସାଁ ପ୍ରିଣ୍ଟରସ୍ ଓ ପବ୍ଲିକେସନସ୍‌ର ସଞ୍ଚାଳକ ଶ୍ରୀ ଶ୍ୟାମ ସୁନ୍ଦର ଦାଶ, ସାହିତ୍ୟିକ ଶ୍ରୀ ସୁଧୀର ନେତ୍ରବେହୁର ଏବଂ ଫ୍ରେଣ୍ଡସ୍ ପବ୍ଲିସର୍ସ୍‌ର ସଞ୍ଚାଳକ ଶ୍ରୀ ସହଦେବ ପ୍ରଧାନଙ୍କ ସାହାଯ୍ୟ-ସହଯୋଗ ଶ୍ରଦ୍ଧାର ସହ ସ୍ମରଣ କରୁଛି ।

କଟକ-୧୩ / ୮. ୩. ୧୯୯୩ — କୃଷ୍ଣଚରଣ ବେହେରା

୩୦ । ୧ । ୧୯୭୯ ତାରିଖରେ ଯାଜପୁର ନରସିଂହ ଚୌଧୁରୀ କଲେଜ୍ ହଲ୍‌ରେ ଷଷ୍ଠ ବିରଜା ବକ୍ତୃତାମାଳାରେ ତୃତୀୟ ଅଭିଭାଷଣ ପ୍ରଦାନରତ ଆଲୋଚକ ଡକ୍ଟର କୃଷ୍ଣ ଚରଣ ବେହେରା—ପାର୍ଶ୍ୱରେ ସଭାପତି ଅଧ୍ୟକ୍ଷ ଶ୍ରୀ ଶଚୀନ୍ଦ୍ର ଚନ୍ଦ୍ର ଦାସ ଏବଂ ଉପସଭାପତି ଅଧ୍ୟାପକ ଶ୍ରୀ ପୀତାମ୍ବର ପ୍ରଧାନ ।

—ଗ୍ରନ୍ଥାଦ୍ୟର ଅଳଙ୍କରଣ

॥ ୧ ॥

# ଓଡ଼ିଶାର ଧର୍ମଧାରା

୩୦-୧-୧୯୭୯ ତାରିଖରେ କଟକ ଜିଲ୍ଲା ଯାଜପୁରସ୍ଥ ନରସିଂହ ଚୌଧୁରୀ କଲେଜ ହଲ୍‌ରେ ଷଷ୍ଠ 'ବିରଜା ବକ୍ତୃତାମାଳା'ରେ ପ୍ରଦତ୍ତ ତୃତୀୟ ଅଭିଭାଷଣ ।

*"The effect of this capture of higher religions for alien mundane purposes has been doubly disastrous. On the one hand the captured higher religions have been diverted from their true mission of preaching to all men a new gospel in which God is revealed as being Love, and Suffering as being the price and opportunity for following Love's lead. × × × On the other hand the effect on the mundane movements in whose service the higher religions have been enlisted, has been to import into them a whole-heartedness which the new gospel alone can inspire ; and this effect has been untoward."*

**—Arnold Toynbee**

**( An Historian's Approach to Religion, Page : 113 )**

# ଅଟଣ୍ଣିପଂ

ଗୁଣ, ସ୍ୱରୂପ ପ୍ରକୃତି, ପୁଣ୍ୟ ବା ମଙ୍ଗଳ ଅର୍ଥରେ ନୁହେଁ, ବୌଦ୍ଧ-ଖ୍ରୀଷ୍ଟିୟାନ-ଇସ୍‌ଲାମ ଇତ୍ୟାଦି ସଂଗଠିତ ଆନୁଷ୍ଠାନିକ ଆଧ୍ୟାତ୍ମିକ ସାଧନା-ପଦ୍ଧତି ଅର୍ଥରେ ହିଁ ଏଠାରେ 'ଧର୍ମ' କଥାଟି ପ୍ରୟୋଗ କରଯାଇଛି । * ପୃଥିବୀର ପ୍ରାୟ ପ୍ରତ୍ୟେକ ଧର୍ମ, ଆତ୍ମା ପରମାତ୍ମା ପ୍ରଭୃତି ବିଷୟରେ ମଥା ଖେଳାଉଛି–ଧର୍ମ ପାଳନକାରୀଙ୍କ ସମକ୍ଷରେ ନିର୍ଦ୍ଦିଷ୍ଟ ନୈତିକ ମାନଦଣ୍ଡ ଓ ଜୀବନଚର୍ଯ୍ୟା ଠିଆ କରଇଛି । ଉଦ୍ଦେଶ୍ୟ–ମଣିଷ ଜୀବନକୁ ଶୃଙ୍ଖଳ ସୁନ୍ଦର କରିବା, ସମାଜକୁ ସମୃଦ୍ଧ ଓ ସମାହିତ କରି ବଞ୍ଚିବା ପାଇଁ ଅଧିକ ଉପଯୋଗୀ କରଇବା । କିନ୍ତୁ ସଭ୍ୟତାର ଇତିହାସରେ ଏହି ମହତ ଉଦ୍ଦେଶ୍ୟ ଚରିତାର୍ଥ ହୋଇଥିବାର ଆମେ ଦେଖୁଛୁ କି ? ସଂକ୍ଷିପ୍ତ ଆଲୋଚନାରେ ମୁଖ୍ୟତଃ ଭାରତୀୟ ପୃଷ୍ଠଭୂମିରେ ଏହି ଜିଜ୍ଞାସା ଓ ପ୍ରଶ୍ନବାଚୀ ଉତ୍ଥାପିତ ହୋଇଛି ।

ପାଚିଲା କେଶ, ପାକୁଆ ପାଟି ଓ ଶୀତଳ ଚକ୍ଷୁରେ ଈଶ୍ୱର-ଆରାଧନା ବା ଧର୍ମ–ପାଳନ କରଯାଇଥାଏ ବୋଲି ସାଧାରଣ ବିଶ୍ୱାସ । କିନ୍ତୁ ଏବେ ଦେଖାଯାଉଛି— ବହୁ କିଶୋର-କିଶୋରୀ ଓ ଯୁବକ ଯୁବତୀ, କେଉଁ ଅଜ୍ଞାତ ଉଦ୍ଦେଶ୍ୟରେ କେଜାଣି, ସେହି ଦିଗରେ ମୁହାଁଇଛନ୍ତି । ପ୍ରକୃତ ଈଶ୍ୱର-ଭକ୍ତି ଓ ଧର୍ମ ପାଳନରେ ସେମାନଙ୍କର ନିଷ୍ଠା ବା ଆନ୍ତରିକତା ସନ୍ଦେହାତୀତ ବ୍ୟାପାର ନୁହେଁ । ଅନେକେ ପୁଣି ଧର୍ମର ତାତ୍ପର୍ଯ୍ୟ ନ ବୁଝି ଏକ ପ୍ରକାର 'ହୋ'ରେ ମାତି ଯାଉଛନ୍ତି । ଧର୍ମାଚରଣ ଦିଗରେ ବୟସ୍କ ବ୍ୟକ୍ତିମାନଙ୍କ ପରି ସେମାନଙ୍କର ଛଳନା ଓ ନ୍ୟସ୍ତ ସ୍ୱାର୍ଥ ଅଧିକାଂଶ କ୍ଷେତ୍ରରେ ପ୍ରକଟ ହୋଇ

---

* ଇଂରାଜୀରେ ଏହାକୁ Organised Religion, Institutional Religion, Major Religion ପ୍ରଭୃତି ଅଭିଧାରେ ଚିହ୍ନିତ କରଯାଇଛି । ପ୍ରସିଦ୍ଧ ଐତିହାସିକ ଆର୍ନୋଲ୍ଡ୍ ଟଏନବି ଏଥିପାଇଁ Higher Religion କଥାଟି ବ୍ୟବହାର କରିଥିବାର ଦେଖାଯାଏ ।

ପଡ଼ୁଛି । ମାତ୍ର ଏହି ଆଲୋଚକର ବୟସ ଯେତେ ବୃଦ୍ଧି ପାଇବାରେ ଲାଗିଛି, ଧର୍ମପ୍ରତି ସେ ଅଧିକରୁ ଅଧିକ ବିମୁଖ ଓ ବୀତଶ୍ରଦ୍ଧ ହୋଇ ପଡ଼ୁଛି । ନିଜର ହେତୁ ହେଲା ଦିନରୁ ସେ ବରବର ଧର୍ମ କ୍ଷେତ୍ରରେ ଲକ୍ଷ୍ୟ କରି ଆସୁଥିବା ବିରୂପ ଘଟଣାବଳୀ ହୁଏତ ଏହାର କାରଣ । ଧର୍ମ ବିଷୟରେ ସେହି ଅତୃପ୍ତି ଓ ଅସନ୍ତୋଷ ଫଳରେ ଏବେ ତାହାର ଏହି ଜିଜ୍ଞାସା ଓ ପ୍ରଶ୍ନବାଚୀ ।

ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳେ ଆମର ଜଣେ ଚିନ୍ତାଶୀଳ ବିଜ୍ଞ ବ୍ୟକ୍ତିଙ୍କ ମନରେ ସେହିପରି ଜିଜ୍ଞାସା ଜାଗରୂକ ହୋଇଥିଲା । ୧୪-୩-୧୯୩୪ ତାରିଖରେ 'ଉତ୍କଳ ସାହିତ୍ୟ ସମାଜ'ର ସୁଧୀ ସଜ୍ଜନମଣ୍ଡଳୀଙ୍କ ସମକ୍ଷରେ ସେ ଏହିପରି ଆପଣା ବକ୍ତବ୍ୟ ଉପସ୍ଥାପନ କରିଥିଲେ—"ଧର୍ମ ଯେ ଗୋଟାଏ ପ୍ରକାଣ୍ଡ ମିଥ୍ୟା କଥା, ତାହା କି କେବଳ ବିଂଶ ଶତାବ୍ଦୀରେ ଆବିଷ୍କୃତ ହୋଇଛି ? ତାହା ଅନେକ ପୂର୍ବରୁ ଲୋକେ ଜାଣିଥିଲେ । ବହୁକାଳ ପୂର୍ବେ ଗୁର୍ବାକ, ଏପିକ୍ୟୁରସ୍ ପ୍ରଭୃତି ମନୀଷୀମାନେ ଲୋକମାନଙ୍କୁ ସତର୍କ କରି ଦେଇଥିଲେ । ଧର୍ମ ଯଦି ଗୁଲି ଯାଇଥାନ୍ତା, ଧର୍ମର ଠେକାମାନଙ୍କର ସେଥିରେ ସ୍ୱାର୍ଥ ହାନି ହୋଇଥାନ୍ତା । ସେଥିପାଇଁ ସେମାନେ ଇଚ୍ଛା କରି ମାନବର ଏହି ଅଜ୍ଞତା ଓ କୁସଂସ୍କାରକୁ ଚିରସ୍ଥାୟୀ କରିଅଛନ୍ତି । ଗରିବ କାଙ୍ଗାଳ ନ ଖାଇ ଧର୍ମସେବା କରୁଛନ୍ତି । ଏଣେ ସାଧୁମାନଙ୍କର ବଡ଼ ବଡ଼ ମଠ ତିଆରି ହେଉଛି, ପୋପ୍‌ଙ୍କର ପ୍ରାସାଦ ଗଗନ ଭେଦ କରୁଛି; ଗୁରୁଜୀମାନଙ୍କର କେତେ ଆଶ୍ରମ ନିର୍ମିତ ହେଉଛି । ନିଜର ସ୍ୱାର୍ଥ ପାଇଁ ଏହି ଚତୁର ଠେକାମାନେ ଅଜ୍ଞ ମାନବକୁ ପରକାଳର ଲୋଭ ଦେଖାଇ ତାହାର ଇହକାଳ ନଷ୍ଟ କରୁଅଛନ୍ତି । 'ବୁଦ୍ଧିର୍ଯସ୍ୟ ବଳଂ ତସ୍ୟ' । ଏହି ଧର୍ମବଣିକମାନଙ୍କର ଚକ୍ରାନ୍ତରେ ପଡ଼ି ମାନବ ଯେ କେତେ ଦୁଃଖ ଯନ୍ତ୍ରଣା ସହ୍ୟ କରି ଆସିଅଛି ଏବଂ ଭବିଷ୍ୟତରେ ମଧ୍ୟ କରିବ, ତାହାର କିଏ ସୀମା ନିର୍ଦ୍ଦେଶ କରିପାରେ ?

"ଆମ୍ଭେମାନେ କହୁଁ ଦେବ-ବିଶ୍ୱାସ ଅଳୀକ ଅଟେ । ଜଡ଼ ବିଜ୍ଞାନ କି ମନୋବିଜ୍ଞାନ, ସାହିତ୍ୟ କି ଦର୍ଶନ କେହି କେବେ କି ଦେବତା ଆବିଷ୍କାର କରିଅଛି ? ନିଉଟନ୍ କି ଆଇନ୍‌ଷ୍ଟାଇନ୍ କେହି କେବେ କି ଦେବତାଙ୍କର ସାକ୍ଷାତକାର ପାଇଅଛନ୍ତି ? ଯେତେବେଳେ ଲପ୍ଲେସ୍ ତାଙ୍କର ଭୁବନ-ବିଖ୍ୟାତ

ଗ୍ରନ୍ଥ ନେପୋଲିୟନଙ୍କୁ ଉପହାର ପ୍ରଦାନ କଲେ, ସେତେବେଳେ ନେପୋଲିୟନ୍ ତାଙ୍କୁ ପଚାରିଲେ—ତୁମ୍ଭ ବିଜ୍ଞାନ ବ୍ୟବସ୍ଥାରେ ଈଶ୍ୱରଙ୍କର କି କୌଣସି ସ୍ଥାନ ଅଛି ? ସେତେବେଳେ ସେହି ସତ୍ୟନିଷ୍ଠ ମହାପଣ୍ଡିତ ଉତ୍ତର କଲେ— I have no need for such a hypothesis. (ମୋର ସେପରି କଳ୍ପନାର ଆବଶ୍ୟକତା ହୋଇ ନାହିଁ ।)"*

ଏହାକୁ ଜଣେ ନାସ୍ତିକର ଧର୍ମ-ଜିଜ୍ଞାସା ବୋଲିବା ଉଚିତ ହେବ ନାହିଁ । ଅଧ୍ୟାପକ ମୋହିନୀ ମୋହନ ସେନାପତିଙ୍କର ସମୁଦାୟ ଅଭିଭାଷଣଟି ପାଠ କଲେ, ପ୍ରତୀୟମାନ ହେବ ଯେ —ଏହା ଜଣେ ଧର୍ମଜ୍ଞ ତଥା ଧର୍ମବିଶ୍ୱାସୀ ବ୍ୟକ୍ତିଙ୍କର ସଂଶୟ, ଅତୃପ୍ତି ଓ ଅସନ୍ତୋଷର ଅକପଟ ପରିପ୍ରକାଶ । ପ୍ରାୟ ପଚାଶ ବର୍ଷ ତଳେ ଉଚ୍ଚାରିତ ଏହି ସ୍ୱର ବର୍ତ୍ତମାନ କାଳ ପାଇଁ ମଧ୍ୟ ବେଖାପ୍ ଶୁଣାଯାଉ ନାହିଁ; ବରଂ ବଳିଷ୍ଠତର ଓ ଅଧିକ ପ୍ରଯୋଜ୍ୟ ମନେ ହେଉଛି ।

ଆମ ଦେଶ ବଡ଼ ଧର୍ମପ୍ରାଣ ଦେଶ ବୋଲି କଥିତ ହୁଏ । ବଂଚିବା ପାଇଁ ଘୋରତର ଜୀବନ-ସଂଗ୍ରାମ କରୁଥିଲାବେଳେ ଏବେ ମଧ୍ୟ ଆମେ ବିଶ୍ୱର ଅନ୍ୟାନ୍ୟ ଜାତିର ଲୋକଙ୍କ ଅପେକ୍ଷା ପ୍ରାର୍ଥନା, ପୂଜାରାଧନା, ଧ୍ୟାନ, ଯୋଗ ଇତ୍ୟାଦିରେ ଅତ୍ୟଧିକ ସମୟ ନଷ୍ଟ କରିଥାଉଁ, ଯାହା କି ଫଳପ୍ରଦ ହୁଏନା ବୋଲି ସାହିତ୍ୟିକ ଖୁସ୍‌ୱନ୍ତ ସିଂହ କେତେ ବର୍ଷ ତଳେ ମତ ପ୍ରକାଶ କରିଥିଲେ ।—(ଇଲଷ୍ଟ୍ରେଟେଡ୍ ୱଇକଲି ଅବ ଇଣ୍ଡିଆ' ପତ୍ରିକାର ୧୯୭୮ ଜୁଲାଇ ୨-୮ ତାରିଖ ସଂଖ୍ୟା ଦ୍ରଷ୍ଟବ୍ୟ) ବିଦେଶୀମାନେ ବିଶେଷତଃ ମାର୍କିନ ଯୁକ୍ତରାଷ୍ଟ୍ରର ଲୋକେ ଆମର ଧର୍ମ ସାଧନା ପ୍ରତି ଆକୃଷ୍ଟ; ସେମାନେ ଧର୍ମସାଧନା ପାଇଁ ଏ ଦେଶକୁ ପଳାଇ ଆସନ୍ତି, ନୋହିଲେ ଆମର ବିଭିନ୍ନ ଧର୍ମଗୁରୁଙ୍କୁ ସ୍ୱଦେଶକୁ ନେଇ ଯାଇ ଧର୍ମ ସାଧନା କରନ୍ତି । ଏଥିପାଇଁ ଆମ ମଧ୍ୟରୁ କେତେକ ବଡ଼ିମା ପ୍ରକାଶ କରି ଥାଆନ୍ତି । ଏହା ଏକ ପ୍ରକାର ଆତ୍ମସନ୍ତୋଷ ବା ଆତ୍ମପ୍ରବୋଧନା ହୋଇ ପାରେ; କିନ୍ତୁ ଗୋଟିଏ ସ୍ୱାଧୀନ ଜାତିର ପ୍ରଗତି ଓ ମର୍ଯ୍ୟାଦା ପ୍ରତିଷ୍ଠାରେ ବିଶେଷ ସହାୟକ ହୁଏନା । ଯେଉଁ କେତେକ ବିଦେଶୀ

* ବିବିଧ ପ୍ରସଙ୍ଗ—ଶ୍ରୀ ମୋହିନୀ ମୋହନ ସେନାପତି, ନବଭାରତ ପ୍ରେସ୍, କଟକ (୧୯୩୯)—ପୃଷ୍ଠା—୫୦

ବନ୍ଧ ଆମର ଧର୍ମ ସାଧନା ପ୍ରତି ଆକୃଷ୍ଟ, ସେମାନେ କିପରି ଓ କେଉଁ ସାମାଜିକ ସ୍ଥିତି ଓ ମାନସିକ ଅବସ୍ଥାରେ ଆକୃଷ୍ଟ ହୋଇଥାଆନ୍ତି, ଏବଂ କିଛି କାଳ ପରେ ଏ ବିଷୟରେ ସେମାନଙ୍କର ମୋହଭଙ୍ଗ ଘଟେ କି ନା ତାହା ଗଭୀର ଅନୁଧ୍ୟାନ ସହ ବିଚାରିବାର କଥା । ଏ ସଂପର୍କରେ ସମାଜତତ୍ତ୍ୱବିଦଙ୍କର ଅନୁସନ୍ଧାନଲବ୍ଧ ତଥ୍ୟ କିନ୍ତୁ ଉତ୍ସାହଜନକ ମନେହୁଏ ନାହିଁ ।

ଅତୀତ ଭାରତ ଅବଶ୍ୟ ଆଧ୍ୟାତ୍ମିକ ସାଧନା ଓ ତତ୍‌ସଂଲଗ୍ନ ତତ୍ତ୍ୱ ବା ଦର୍ଶନ ସକାଶେ ସମଗ୍ର ପୃଥିବୀରେ ଖ୍ୟାତିଲାଭ କରିଥିଲା । ପୃଥିବୀରେ ଏ ପର୍ଯ୍ୟନ୍ତ ଯେଉଁ ଛଅଟି ପ୍ରଧାନ ଧର୍ମ ପ୍ରବର୍ତ୍ତିତ ହୋଇଥିବାର ତତ୍‌ବିଦମାନଙ୍କ ଦ୍ୱାରା କଥିତ ହୁଏ, ତନ୍ମଧ୍ୟରୁ ହିନ୍ଦୁ ଧର୍ମ ଓ ବୌଦ୍ଧଧର୍ମର ଉତ୍ପତ୍ତି-ସ୍ଥଳ ବା କେନ୍ଦ୍ରଭୂମି ଥିଲା ଏହି ଭାରତବର୍ଷ । କାଳକ୍ରମ ଅନୁସାରେ ପୁଣି ହିନ୍ଦୁ ଧର୍ମ ପ୍ରାଚୀନ-ତମ ଏବଂ ବୌଦ୍ଧ ଧର୍ମ ପ୍ରାଚୀନତର ବୋଲି ପଣ୍ଡିତମାନଙ୍କର ମତ । ପ୍ରସଙ୍ଗ କ୍ରମ ଏଠାରେ ସାଧାରଣ ପାଠକମାନଙ୍କ ପାଇଁ ଛଅଗୋଟି ପ୍ରଧାନ ବିଶ୍ୱଧର୍ମର ସଂକ୍ଷିପ୍ତ ପରିଚୟ ପ୍ରଦାନ କରାଯାଉଛି ।

(୧) ହିନ୍ଦୁଧର୍ମ—ଏହାର ପ୍ରବର୍ତ୍ତନ କାଳ ନିର୍ଦ୍ଦିଷ୍ଟ ଭାବରେ କହିହେବ ନାହିଁ; କେହି କେହି ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀ ବୋଲି ଅନୁମାନ କରନ୍ତି । ବହୁ ପ୍ରାଚୀନ ଧର୍ମମତ, ତେଣୁ ଏହା 'ସନାତନ ଧର୍ମ' ନାମରେ ପରିଚିତ । ବୈଦିକ ଋଷିମାନଙ୍କୁ ଏହାର ପ୍ରବର୍ତ୍ତକ ରୂପେ ଗ୍ରହଣ କରାଯାଇପାରେ । ଏହାର ପ୍ରଧାନ ଧର୍ମଗ୍ରନ୍ଥ –ବେଦ ଓ ଉପନିଷଦ । ହିନ୍ଦୁ ଧର୍ମାବଲମ୍ବୀମାନେ ପୃଥିବୀର ବିଭିନ୍ନ ଅଞ୍ଚଳରେ ଥିଲେ ମଧ୍ୟ ନେପାଳ ସମେତ ଭାରତ-ପାକିସ୍ତାନ ଉପ-ମହାଦେଶରେ ମୁଖ୍ୟତଃ ରହିଛନ୍ତି ।

(୨) ପାରସୀ ଧର୍ମ [Zoroastrianism]—ଏହାର ପ୍ରବର୍ତ୍ତକ ଜରଥୁଷ୍ଟ । ପ୍ରବର୍ତ୍ତନ କାଳ –ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀ ବୋଲି ମନେକରାଯାଏ । ପ୍ରାଚୀନ ଇରାନ୍‌ର ପ୍ରଧାନ ଧର୍ମ । ଏହାର ଧର୍ମଗ୍ରନ୍ଥ ଜେନ୍ଦ୍ ଅବେସ୍ତା । ଭାଷା ଓ ବିଷୟବସ୍ତୁ ଦିଗରୁ ବେଦ ଓ ଜେନ୍ଦ୍‌ଅବେସ୍ତା ମଧ୍ୟରେ ଢେରେକ ଆଶ୍ଚର୍ଯ୍ୟଜନକ ସାଦୃଶ୍ୟ ଥିବାର ଦେଖାଯାଏ । ଏବେ ଏହି ଧର୍ମ ଭାରତରେ ପାର୍ସୀମାନଙ୍କ ମଧ୍ୟରେ ବଞ୍ଚି ରହିଛି ।

(୩) ଇହୁଦୀ ଧର୍ମ (Judaism)—ବହୁ ପୂର୍ବରୁ ସୂଚନା ମିଳୁଥିଲେ ମଧ୍ୟ ଏହାର ପ୍ରବର୍ତ୍ତନ-କାଳ ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀ ବୋଲି ଧରା ଯାଇଥାଏ । ପ୍ରବର୍ତ୍ତକ ହେଉଛନ୍ତି—ଆବ୍ରାହମ୍ । ଏହାର ଧର୍ମଗ୍ରନ୍ଥ ହେଉଛି—ତାଲ୍ମୁଦ୍ ଏବଂ ବାଇବେଲ୍ ଓଲ୍ଡ ଟେଷ୍ଟାମେଣ୍ଟର ପ୍ରଥମ ପାଞ୍ଚ ଅଧ୍ୟାୟ (ପଞ୍ଚନାମା ବା Pentateuch ଅଭିଧାରେ ଚିହ୍ନିତ) । ମାର୍କିନ୍ ଯୁକ୍ତରାଷ୍ଟ୍ର, ସୋଭିଏଟ୍ ରୁଷିଆ ଓ ଇଜ୍ରାଏଲ୍‌ରେ ବହୁ ସଂଖ୍ୟାରେ ଇହୁଦୀ ବା ଜିଉମାନେ ରହିଛନ୍ତି ।

(୪) ବୌଦ୍ଧ ଧର୍ମ– ପ୍ରବର୍ତ୍ତକ ଗୌତମ ବୁଦ୍ଧ । ପ୍ରବର୍ତ୍ତନ କାଳ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ । ଏହାର ଧର୍ମଗ୍ରନ୍ଥ ହେଉଛି—ତ୍ରିପିଟକ (ଅର୍ଥାତ୍ ସୂତ୍ର ପିଟକ, ବିନୟ ପିଟକ ଓ ଅଭିଧର୍ମ ପିଟକ ନାମଧେୟ ବୁଦ୍ଧବାଣୀ ବା ବୌଦ୍ଧ ଧର୍ମ–ନୀତିର ତିନିଟି ପେଡ଼ି) । ଏବେ ପୃଥିବୀରେ ବୌଦ୍ଧ ଧର୍ମାବଲମ୍ବୀଙ୍କ ସଂଖ୍ୟା ୧୫ କୋଟିରୁ ସାମାନ୍ୟ ଅଧିକ । ଏମାନେ ମୁଖ୍ୟତଃ ବ୍ରହ୍ମଦେଶ, ଶ୍ୟାମ, ଶ୍ରୀଲଙ୍କା ଓ ଜାପାନରେ ରହିଛନ୍ତି ; ଭାରତରେ ଏମାନଙ୍କ ସଂଖ୍ୟା ଅତ୍ୟନ୍ତ ଊଣା ।

(୫) ଖ୍ରୀଷ୍ଟ ଧର୍ମ— ପ୍ରବର୍ତ୍ତକ ଯୀଶୁ ଖ୍ରୀଷ୍ଟ । ଏହାର ଧର୍ମଗ୍ରନ୍ଥ— ବାଇବେଲ୍‌ର ଉଭୟ ଓଲଡ୍ ଟେଷ୍ଟାମେଣ୍ଟ ଓ ନିଉ ଟେଷ୍ଟାମେଣ୍ଟ୍ । ପୃଥିବୀର ଜନସଂଖ୍ୟାର ଏକ-ତୃତୀୟାଂଶ ଲୋକ ଏହି ଧର୍ମ ଅନୁସରଣ କରନ୍ତି । ପ୍ରାୟ ଦୁଇ ହଜାର ବର୍ଷ ତଳେ ଏହାର ପ୍ରବର୍ତ୍ତନ ହୋଇଥିଲା ।

(୬) ଇସଲାମ ଧର୍ମ - ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ଏହାର ପ୍ରବର୍ତ୍ତନ କାଳ । ପ୍ରବର୍ତ୍ତକ—ମହମ୍ମଦ । ଏହାର ଧର୍ମଗ୍ରନ୍ଥ–କୋରାନ୍ । କୋରାନ୍ ୧୧୪ ଗୋଟି ଅଧ୍ୟାୟରେ ବିଭକ୍ତ । ଏଥିରେ ଆଲ୍ଲାଙ୍କର ଗୁଣ ଓ ମହିମା କୀର୍ତ୍ତନ ସଙ୍ଗେ ସଙ୍ଗେ ବହୁ ସାମାଜିକ ଓ ନୈତିକ ଅନୁଶାସନ, ଧର୍ମୀୟ ଆଚାର-ଅନୁଷ୍ଠାନ ବିଷୟର ଉଲ୍ଲେଖ ରହିଛି । ଏବେ ପୃଥିବୀର ଇସ୍‌ଲାମ୍ ଧର୍ମାବଲମ୍ବୀଙ୍କ ସଂଖ୍ୟା ପଇଁଚାଳିଶ କୋଟିରୁ ଅଧିକ ।

ଭାରତୀୟ ହିନ୍ଦୁ ଧର୍ମଠାରୁ ଅନ୍ୟାନ୍ୟ ଧର୍ମଗୁଡ଼ିକ ବିଭିନ୍ନ ସତ୍ୟ ଓ ନୀତିନିୟମ ଜଣାଶୁଣା ଗ୍ରହଣ କରିଥିବାର ଜଣାପଡ଼େ । ଆଧ୍ୟାତ୍ମିକ ବିଚାର-ଧାରା ବେଦରୁ ଜେନ୍ଦ୍–ଅବେସ୍ତା ମଧ୍ୟ ଦେଇ ବାଇବେଲ୍‌ରେ ଗୃହୀତ ହୋଇଛି

ବୋଲି ତତ୍‌ବିଦ୍ ପଣ୍ଡିତମାନଙ୍କ ମତ । ସେହିପରି ଖ୍ରୀଷ୍ଟ ଧର୍ମର ଅଧିକାଂଶ ସତ୍ୟ ବୌଦ୍ଧ ଧର୍ମ ଓ ଇହୁଦୀ ଧର୍ମରୁ ଗ୍ରହଣ କରାଯାଇଛି । ସ୍ୱର୍ଗର ପରିକଳ୍ପନା ପ୍ରଥମେ ହିନ୍ଦୁ ଧର୍ମରେ ହିଁ କରାଯାଇଥିଲା ; ପରେ ପ୍ରାୟ ସବୁ ଧର୍ମରେ ତାହା ସ୍ଥାନ ଲାଭ କଲା । ହିନ୍ଦୁ ଧର୍ମର ହୋମ ଏବଂ ଯଜ୍ଞ କୁଣ୍ଡର ବଳିଦାନ ବ୍ୟାପାରଟି ପରେ ପାରସୀ, ଇହୁଦୀ ଓ ଖ୍ରୀଷ୍ଟ ଧର୍ମରେ ଗୃହୀତ ହୋଇଥିଲା । ପ୍ରକୃତରେ, ଅତୀତ ଭାରତ ଧର୍ମସାଧନାର ଯେଉଁ ବଳିଷ୍ଠ ଆଲୋକ-ବର୍ତ୍ତିକା ପ୍ରଜ୍ୱଳିତ କରି ରଖିଥିଲା, ତହିଁରୁ ଶିଖା ଯାଇ ପୃଥିବୀର ବିଭିନ୍ନ ଅଞ୍ଚଳରେ ବିଚ୍ଛୁରିତ ହୋଇ ପଡ଼ିଥିଲା । ଇତିହାସର ବିଭିନ୍ନ ଯୁଗରେ ହୁଏନ୍‌ସାଂ (ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ), ଅଲ୍ ବିରୁଣୀ (ଏକାଦଶ ଶତାବ୍ଦୀ) ପ୍ରମୁଖଙ୍କ ଭଳି କେତେ ଜିଜ୍ଞାସୁ ଏ ଦେଶକୁ ଆସି ଧର୍ମ ଓ ଦର୍ଶନର ଚର୍ଚ୍ଚା କରିଥିଲେ—ଆଧ୍ୟାତ୍ମିକ ସାଧନାରେ ନିମଜ୍ଜିତ ହୋଇଥିଲେ—ବିଭିନ୍ନ ଜ୍ଞାନ ବିଜ୍ଞାନର ଗ୍ରନ୍ଥ ନିଜ ନିଜ ଭାଷାରେ ଅନୁବାଦ କରିଥିଲେ—ବହୁ ଭାରତୀୟ ଗ୍ରନ୍ଥ ମଧ୍ୟ ସାଙ୍ଗରେ ସ୍ୱଦେଶକୁ ଘେନି ଯାଇଥିଲେ । ଏଥିରୁ ଭାରତୀୟ ଧର୍ମ ସାଧନାର ମହତ୍ତ୍ୱ ଓ ଗୌରବୋଜ୍ଜ୍ୱଳ ପରଂପରା ଭଲ ଭାବରେ ପ୍ରତୀୟମାନ ହୋଇଥାଏ ।

ଏହି ମହନୀୟ ପରଂପରା ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ଠାରୁ କ୍ରମେ କ୍ଷୁଣ୍ଣ ହେବାରେ ଲାଗିଲା । ହିନ୍ଦୁ ଧର୍ମାବଲମ୍ବୀମାନଙ୍କର ପତନର ଚିତ୍ର ଏବଂ ସେହି ପତନର କାରଣ ଅଲ୍‌ବିରୁଣୀ ଆପଣା ଭାରତ ବିବରଣୀ 'କିତାବ୍-ଉଲ୍-ହିନ୍ଦ୍'ରେ ସ୍ପଷ୍ଟ ଉଲ୍ଲେଖ କରିଯାଇଛନ୍ତି । ଭାରତ ଇତିହାସର ଗବେଷକମାନେ ମଧ୍ୟ ସେହି ଶୋଚନୀୟ ଅବସ୍ଥାର ବିବରଣୀ ପ୍ରଦାନ କରିଛନ୍ତି । ଭାରତୀୟ ଧର୍ମ-ସାଧନାର ଏହିପରି ଅଧୋଗତି କାଳରେ ହିନ୍ଦୁ ଧର୍ମ ମଧ୍ୟରେ ବିଭିନ୍ନ କ୍ଷୁଦ୍ର କ୍ଷୁଦ୍ର ଶାଖା-ସଂପ୍ରଦାୟ ପ୍ରବଳ ହୋଇ ଉଠିଥିଲେ । ସଂପ୍ରଦାୟଗୁଡ଼ିକ ଉଦାର ନୀତି ଓ ଆଦର୍ଶ ଜୀବନଚର୍ଯ୍ୟାର ଅନୁବର୍ତ୍ତନ କରିବା ଅପେକ୍ଷା ନିଜ ନିଜ ମଧ୍ୟରେ ସଂଘର୍ଷ ଓ କଳିଗୋଳ ଲଗାଉଥିଲେ ବେଶୀ ।

ମୋଟାମୋଟି, ଜନସମାଜକୁ ଧାରଣ କରିବାର ଶକ୍ତି (ଧର୍ମ କଥାଟିର ବ୍ୟୁତ୍ପତ୍ତିଗତ ଅର୍ଥ ଅନୁଯାୟୀ) ଭାରତୀୟ ଧର୍ମ ସେତେବେଳକୁ ହରାଇଥାଏ । ଭାରତୀୟ ସମାଜ ଓ ଧର୍ମର ଅନ୍ତର୍ନିହିତ ଦୁର୍ବଳତା ହେତୁ ତଥା ରାଜନୈତିକ

କାରଣରୁ ଖ୍ରୀଷ୍ଟ ଧର୍ମ ଓ ଇସ୍‌ଲମ ଧର୍ମ କ୍ରମେ ଏ ଦେଶରେ ପ୍ରସାର ଲାଭ କରିବାର ସୁଯୋଗ ପାଇଥାଏ ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଧର୍ମ ସାଧନା କ୍ଷେତ୍ରରେ ଇଉରୋପର ଅବସ୍ଥା ମଧ୍ୟ ସନ୍ତୋଷଜନକ ନ ଥିଲା । କିନ୍ତୁ ରେନେସାଁସ୍ ଫଳରେ ସବୁ ଓଲଟ ପାଲଟ ହୋଇଗଲା । ଇଉରୋପୀୟ ରେନେସାଁସ୍ ଜନ ସମାଜକୁ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଆଣିଦେଲା --ନୂଆ କରି ଦେଖିବା, ନୂଆ କରି ଭାବିବା ପାଇଁ ଶିଖାଇଲା —ବିଭିନ୍ନ ବିଷୟରେ ଜିଜ୍ଞାସା ଓ କୌତୂହଳ ଜନସମାଜ ମନରେ ଜାଗରୂକ କଲା—ଅଜଣା ପଥରେ ଅଭିଯାନ କରିବା ପାଇଁ ପ୍ରେରଣା ଦେଲା । ପରେ ପରେ ୟୁରୋପରେ ଆରମ୍ଭ ହୋଇଗଲା—ଆଧୁନିକ ବିଜ୍ଞାନର ଜୟଯାତ୍ରା । ଫଳରେ ପାଶ୍ଚାତ୍ୟ ଅଭୂତପୂର୍ବ ଭାବରେ ବୈଷୟିକ ତଥା ସାଂସ୍କୃତିକ କ୍ଷେତ୍ରରେ ଅଗ୍ରଗତି କରିଗଲା ; ପ୍ରାଚ୍ୟ ପଡ଼ିରହିଲା ପଛରେ । ଧର୍ମସାଧନା ପାଶ୍ଚାତ୍ୟ ସମାଜ-ଜୀବନରେ ଆଉ କେନ୍ଦ୍ର ବିନ୍ଦୁ ହୋଇ ରହି ପାରିଲା ନାହିଁ ; ତାହାର ସ୍ଥାନ ଅଧିକାର କଲା ବିଜ୍ଞାନ ଓ ରାଜନୀତି । ଭାରତକୁ ସେହି ଅବସ୍ଥାରେ ପହଞ୍ଚିବା ପାଇଁ ଅପେକ୍ଷା କରିବାକୁ ପଡ଼ିଲା ଊନବିଂଶ ଶତାବ୍ଦୀ ଯାଏଁ ।

ଓଡ଼ିଶା ଭାରତବର୍ଷର ଏକ ଅଙ୍ଗ ରାଜ୍ୟ ଥିବାରୁ ଭାରତୀୟ ଧର୍ମ ସାଧନାର ଉତ୍‌ଥାନ ପତନରେ ପ୍ରାୟ ସବୁବେଳେ ଅଂଶୀଦାର ହୋଇ ଆସିଛି । ନିଜର ଶାଖା ସଂପ୍ରଦାୟ ସହ ହିନ୍ଦୁ ଧର୍ମ, ଜୈନ ଧର୍ମ ଓ ବୌଦ୍ଧ ଧର୍ମ ଏଠାରେ ପ୍ରସାର ଲାଭ କରିଛି । ଇତିହାସ ଅନୁଯାୟୀ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରୁ ଏହାର ଜଗନ୍ନାଥ-ପୀଠ ବିଭିନ୍ନ ଧର୍ମ-ପ୍ରଚାରକ ଓ ପ୍ରବର୍ତ୍ତକମାନଙ୍କୁ ଆକୃଷ୍ଟ କରିଛି । ତତ୍‌ପୂର୍ବରୁ ଅବଶ୍ୟ ବିରଜା କ୍ଷେତ୍ର ଭାରତ-ବିଖ୍ୟାତ ହୋଇ ପାରିଥିଲା । ବୌଦ୍ଧ ଓ ଜୈନ ଧର୍ମ ମଧ୍ୟ ରାଜକୀୟ ପୃଷ୍ଠପୋଷକତା ଲାଭ କରିବା ସଙ୍ଗେ ସଙ୍ଗେ ଜନ-ସମାଜ ମଧ୍ୟରେ ପ୍ରଚାରିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଅଶୋକଙ୍କ ଶିଳାଲେଖ ଏବଂ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଖାରବେଳଙ୍କ ଶିଳା-ଲେଖ ଏବେ ବି ଏ ଘଟଣାର ମୂକ ସାକ୍ଷୀ ରୂପେ ବିଦ୍ୟମାନ । ଟିକିଏ ପରବର୍ତ୍ତୀ କାଳରେ ତାଂତ୍ରିକ ବୌଦ୍ଧ ଧର୍ମ ବା ବଜ୍ରଯାନ—ସହଜଯାନ ଇତ୍ୟାଦିର ପ୍ରଧାନ କେନ୍ଦ୍ର ହୋଇଥିଲା ଉଡ୍‌ଡୀୟାନ ପୀଠ ବା ଓଡ଼ିଶା । ସମଗ୍ର ରାଜ୍ୟ ବା

ସମ୍ବଲପୁରର ରାଜା ଇନ୍ଦ୍ରଭୂତିଙ୍କ ରଚନା 'ଜ୍ଞାନସିଦ୍ଧି' ଏବଂ ଲଙ୍କା ବା ସୋନପୁରର ରାଜବଧୂ ଲକ୍ଷ୍ମୀଙ୍କରାଙ୍କ ରଚନା 'ଅଦ୍ୱୟ ସିଦ୍ଧି' ତାଂତ୍ରିକ ବୌଦ୍ଧ ଧର୍ମକୁ ଓଡ଼ିଶାର ଅତୁଳନୀୟ ଦାନ ।* ଏହା ସଙ୍ଗେ ସଙ୍ଗେ ନାଥ, ଶୈବ, ଶାକ୍ତ, ବୈଷ୍ଣବ ଆଦି ହିନ୍ଦୁ ଧର୍ମର ବିଭିନ୍ନ ଶାଖା-ସଂପ୍ରଦାୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ଊଣାଧିକେ ଏ ରାଜ୍ୟରେ ପ୍ରଚାର ଲାଭ କରିଥିବାର ଜଣାପଡ଼େ । ରାଜା ମହା-ରାଜାଙ୍କ ବିଭିନ୍ନ ଅଭିଲେଖ ତଥା ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ରଚିତ ବିଭିନ୍ନ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥରୁ ଏ କଥାର ପ୍ରମାଣ ମିଳିଥାଏ ।

× × ×

ଏହାହିଁ ପଞ୍ଚଦଶ ଶତାବ୍ଦୀରୁ ଅଦ୍ୟାବଧି 'ଓଡ଼ିଶାର ଧର୍ମଧାରା' ବିଷୟକ ମୋର ଅଭିଭାଷଣର ପୃଷ୍ଠ-ପ୍ରେକ୍ଷା । ଅଭିଭାଷଣଟିରେ ମୁଖ୍ୟତଃ ଧର୍ମର ସାମାଜିକ ତାତ୍ପର୍ଯ୍ୟ ଓ ପ୍ରାସଙ୍ଗିକତା ଘେନି ବିଚାର ଆଲୋଚନା କରାଯାଇଛି । ଧର୍ମଧାରାର ତାତ୍ତ୍ୱିକ ବ୍ୟାଖ୍ୟା ବା ଦାର୍ଶନିକ ଭାଷ୍ୟ ଏଠାରେ ରଚିତ ହୋଇ ନାହିଁ —ଯାହା କି ପୂର୍ବରୁ ଯଥେଷ୍ଟ କରାଯାଇଛି । ଏବଂ ସାଂପ୍ରତିକ କାଳ ତଥା ମାନସିକତା ଦୃଷ୍ଟିରୁ ଯାହାର ଆଉ ବିଶେଷ ଆବଶ୍ୟକତା ମଧ୍ୟ ନାହିଁ । ଗ୍ରନ୍ଥାକାରରେ ପ୍ରକାଶ କଲାବେଳେ ଅଭିଭାଷଣଟିର ସାମାନ୍ୟ ପରିମାର୍ଜନା କରାଯାଇଛି ଏବଂ ମୋର ବକ୍ତବ୍ୟକୁ ସ୍ପଷ୍ଟତର ଓ ବର୍ଦ୍ଧିଷ୍ଣୁତର କରିବା ପାଇଁ ନୂଆ କରି ଶେଷରେ ଏକ ପୁଚ୍ଛାଗ୍ର ତଥା ଆରମ୍ଭରେ ଏହି ଅଗ୍ରଲିପି ସଂଯୋଜିତ ହୋଇଛି । ଅଭି-ଭାଷଣଟିକୁ ଗ୍ରନ୍ଥ-ରୂପ ପ୍ରଦାନ କାଳରେ ବିରଜା ବକ୍ତୃତାମାଳାର ପରିଚାଳନା ସମିତିକୁ ଅଶେଷ ସାଧୁବାଦ ଜଣାଉଛି ।

□□□

* ଏ ସଂପର୍କରେ ଦ୍ରଷ୍ଟବ୍ୟ : ଓଡ଼ିଶାରେ ବୌଦ୍ଧ ଧର୍ମ—ଡଃ ନବୀନ କୁମାର ସାହୁ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର (୧୯୫୯) ।

# ଓଡ଼ିଶାର ଧର୍ମଧାରା

[ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରୁ ଅଦ୍ୟାବଧି ]

ଆଜି ଏହି 'ପାପ-ପ୍ରମୋଚନୀ' ବୈତରଣୀ କୂଳସ୍ଥ ସୁପ୍ରାଚୀନ ବିରଜା ତୀର୍ଥରେ ଆପଣମାନଙ୍କ ସଙ୍ଗରେ ଭାବ-ବିନିମୟ ଲାଗି ଉପସ୍ଥିତ ହୋଇଥିବାରୁ ମୋର ଆନନ୍ଦର ଅନ୍ତ ନାହିଁ । ସେଥି ସକାଶେ ମୋତେ ସୁଯୋଗ ଦେଇଥିବା ହେତୁ କଲେଜର ଅଧ୍ୟକ୍ଷ ତଥା ବିରଜା ବକ୍ତୃତାମାଳାର ପରିଚାଳନା ସମିତି ନିକଟରେ ମୁଁ କୃତଜ୍ଞ । ଏହି ଅବକାଶରେ ପ୍ରଥମେ ବାଲ୍ୟକାଳର ଏକ ସ୍ମୃତି ରୋମନ୍ଥନ କରିବା ପାଇଁ ମନ ବଳୁଛି । ସେ ପ୍ରାୟ ଚାଳିଶ ବର୍ଷ ତଳର କଥା । ଚୈତ୍ର କି ବୈଶାଖ ମାସରେ ଏଠାରେ ମହାବାରୁଣୀ ଯୋଗ ପଡ଼ିଥାଏ । ଭଦ୍ରକ ସବଡ଼ିଭିଜନ୍ ତିହିଡ଼ି ଥାନାର ପାରହାଟ ଅଞ୍ଚଳରୁ ଆତ୍ମୀୟସ୍ୱଜନଙ୍କ ମେଳରେ ସେହି ଖରଦିନେ ପାଦରେ ଚାଲି ଚାଲି ଏଠାକୁ ଆସିଥିଲି । ବୈତରଣୀରେ ବାରୁଣୀ-ବୁଡ଼ ପକାଇ ପାପ ମୋଚନ କରିବା. କିମ୍ବା ବିରଜା ତୀର୍ଥରେ ଭକ୍ତିପୂତ ପ୍ରାଣରେ ଦେବୀ ଦର୍ଶନ ପୂର୍ବକ ଧର୍ମ ଅର୍ଜନ କରିବା ଯେ ମୋର ଏକମାତ୍ର ଉଦ୍ଦେଶ୍ୟ ଥିଲା, ତାହା କହିହେବ ନାହିଁ । ସେଦିନ ମୋର ସେହି କିଶୋର-ହୃଦୟରେ ଯାତ୍ରା ବା ମେଳା-ମଉଛବ ଦେଖିବାର ଆକର୍ଷଣ ହିଁ ଥିଲା ପ୍ରବଳ । ଗୋଟିଏ ରାତ୍ରିର ମାତ୍ର ଅଳ୍ପ କେତେ ଘଣ୍ଟା ଆନନ୍ଦ କଳରବ ଭିତରେ ମେଳା ଦେଖିଥିଲି । ରାତ୍ରିର ଶେଷ ପ୍ରହରରେ ସେହି ବିପୁଳ ଜନ-ସମାବେଶ ମଧ୍ୟରେ କଲେରା ମହାମାରୀ ନିଜର କରାଳ ମୂର୍ତ୍ତି ଧରି ପ୍ରବେଶ କରିଥିଲା ଏବଂ ଆନନ୍ଦ ମହୋତ୍ସବ ଭିତରେ ସୃଷ୍ଟି କରି ଦେଇଥିଲା କୋହଳିଆ ଭୟ । ତହିଁ ଆରଦିନ ସୂର୍ଯ୍ୟୋଦୟ ନ ହେଉଣୁ ଭୀତତ୍ରସ୍ତ ଆମ ଦଳଟି

'ଯଃ ପଳାୟତେ ସ ଜୀବତି' ନ୍ୟାୟରେ ସକଳ ଧର୍ମକାର୍ଯ୍ୟ ଛାଡ଼ି ଏହି କ୍ଷେତ୍ରରୁ ପଳାୟନ କରିଥିଲି ।

ତାହା ପରେ ଏ କ୍ଷେତ୍ର-ଦର୍ଶନର ସୌଭାଗ୍ୟ ଘଟିଛି ବାରମ୍ବାର । ଆସିଛି ଏଠାକାର କଳା ଓ ସ୍ଥାପତ୍ୟ ସମ୍ବନ୍ଧରେ ଦେଖିବା ପାଇଁ—ଆସିଛି ମୋର ପୂଜନୀୟ ଗୁରୁ ଏ କଲେଜର ପ୍ରାକ୍ତନ ଅଧ୍ୟକ୍ଷ ନାରାୟଣମୋହନ ଦେ'ଙ୍କର ଦର୍ଶନ ପାଇଁ—କେବେ ପୁଣି ଆସିଛି କବିମଞ୍ଜୁଳ କୃଷ୍ଣପ୍ରସାଦ ବସୁଙ୍କର ସଙ୍ଗ ଓ ସାନ୍ନିଧ୍ୟ ଲାଭ ପାଇଁ—ଆଉ କେବେ କେବେ ଆସିଛି ଏଠାକାର ଶିକ୍ଷାୟତନ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ବକ୍ତୃତା ଦେବା ପାଇଁ । କିନ୍ତୁ ପ୍ରାୟ ଚାଳିଶ ବର୍ଷ ତଳର ସେହି ବାରୁଣୀ ଯାତ୍ରା ବିଷୟ ମୁଁ ପାସୋରି ପାରି ନାହିଁ । କିଶୋର ବୟସର ସେହି ଅମ୍ଳମଧୁର ସ୍ମୃତି ମୋର ଅବଚେତନରେ ବସା ବାନ୍ଧି ରହି ଯାଇଛି । ସୁଧୀବୃନ୍ଦ, ଓଡ଼ିଶାର ଧର୍ମଧାରା ସଂପର୍କରେ ଆଜି ଆପଣମାନଙ୍କ ସହିତ ଭାବ-ବିନିମୟ କରିବାକୁ ଗଲାବେଳେ ଏହି ସ୍ମୃତି-ରୋମନ୍ଥନର ହୁଏତ କିଛି ତାତ୍ପର୍ଯ୍ୟ ରହିଛି—ରହିଛି ବୋଧହୁଏ କୌଣସି ପରୋକ୍ଷ ସମ୍ପର୍କ । ତେଣୁ ଏତିକି ଗୌରଚନ୍ଦ୍ରିକା କରି ଆଲୋଚ୍ୟ ପ୍ରସଙ୍ଗରେ ପ୍ରବେଶ କରୁଛି ।

## ଐତିହାସିକ ଚିତ୍ର

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଓଡ଼ିଶା, ବୈଷୟିକ ତଥା ସାଂସ୍କୃତିକ ପ୍ରଗତିର ଶୀର୍ଷ ସ୍ଥାନରେ ଉପନୀତ ହୋଇଥିବା ଓଡ଼ିଶା । ସେତେବେଳେ ଦକ୍ଷିଣ, ଉତ୍ତର ଓ ପଶ୍ଚିମ ଦିଗରେ ରାଜ୍ୟର ସୀମା ଆଜିର ସୀମାଠାରୁ ଅଧିକ ପରିବ୍ୟାପ୍ତ ଥିଲା । 'ତ୍ରିକଳିଙ୍ଗାଧିପତି' ଉପାଧିରେ ଭୂଷିତ ସୋମବଂଶୀ କେଶରୀ ରାଜା-ମାନଙ୍କଠାରୁ (ଖ୍ରୀଷ୍ଟୀୟ ଦଶମ-ଏକାଦଶ ଶତାବ୍ଦୀ) ପ୍ରାକୃତିକ ଉତ୍କଳର ରାଜ-ନୈତିକ ସଂହତି ସୁପ୍ରତିଷ୍ଠିତ ହୋଇ ସାରିଥିଲା । * ଶୌର୍ଯ୍ୟବୀର୍ଯ୍ୟରେ

* Chronology of the Bhauma-Karas and the Soma-Vamsis of Orissa—K. C Panigrahi. M L J. Press, Madras (1961)—Page 33 and Proceedings of Orissa History Congress, Berhampur, Ganjam (1977)—Pages 55-60.

ସେତେବେଳକୁ ଓଡ଼ିଶା ହୋଇଥିଲା ଅତ୍ୟନ୍ତ ଶକ୍ତିଶାଳୀ । ତେଣୁ ସମଗ୍ର ଭାରତବର୍ଷରେ ପ୍ରଭାବ ବିସ୍ତାର ପାଇଁ ଉଦ୍ୟତ ମୁସଲମାନ ଶକ୍ତିର ସେ ଏକାଧିକ ଥର ସମ୍ମୁଖୀନ ହୋଇ ପାରିଥିଲା ସଫଳତାର ସହିତ । ସେତେବେଳକୁ ଓଡ଼ିଆ ସାଧବ ପୁଅର ବାଣିଜ୍ୟ-ତରୀ ମହୋଦଧି ଓ ଭାରତ ମହାସାଗର ବକ୍ଷରେ ଜୈତ୍ର ପତାକା ଉଡ଼ାଇ ଯାତାୟାତ କରୁଥିଲା । ଆମର ଭୁବନେଶ୍ୱର, ପୁରୀ ଓ କୋଣାର୍କର ବିଶ୍ୱବିଖ୍ୟାତ ମନ୍ଦିରମାଳା ମଧ୍ୟ ନିର୍ମିତ ହୋଇସାରିଥିଲା । ଶାକ୍ତ ପୀଠରୂପେ ଏହି ବିରଜା କ୍ଷେତ୍ର ଏବଂ ଶୈବ ପୀଠରୂପେ ଏକାମ୍ରକ୍ଷେତ୍ର ପ୍ରସିଦ୍ଧି ଲାଭ କରି ସାରିଥିଲା । ଶ୍ରୀଜଗନ୍ନାଥ ଓଡ଼ିଶାର ରାଷ୍ଟ୍ରଦେବତାରେ ପରିଣତ ହୋଇ ସାରିଥିଲେ । 'ପରମ ମାହେଶ୍ୱର' ବା 'ପରମ ବୈଷ୍ଣବ' ଉପାଧିଯୁକ୍ତ ଗଙ୍ଗବଂଶୀ ରାଜାମାନେ ବିଶେଷତଃ ତୃତୀୟ ଅନଙ୍ଗଭୀମ ଦେବ (ରାଜତ୍ୱ କାଳ : ୧୨୧୧–୧୨୩୮) ଆପଣାକୁ 'ପୁରୁଷୋତ୍ତମ ପୁତ୍ର' ବା ଜଗନ୍ନାଥଙ୍କ 'ରାଉତ' ବୋଲି ମନେ କରି ପ୍ରଜାପାଳନ କରୁଥିଲେ । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବ ଆଦି ବିଭିନ୍ନ ମତବାଦକୁ ଅଙ୍ଗୀଭୂତ କରି ନେଇ ଶ୍ରୀଜଗନ୍ନାଥ ସେତେବେଳକୁ ହିନ୍ଦୁଜଗତରେ ଏକ ସମନ୍ୱୟବାଦୀ ଦେବତା ରୂପେ ସୁପରିଚିତ ହୋଇ ସାରିଥିଲେ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟ, ଦଶମ ଶତାବ୍ଦୀରେ ରାମାନନ୍ଦ ପ୍ରମୁଖ ବିଶିଷ୍ଟ ଦାର୍ଶନିକ ଓ ଧର୍ମପ୍ରଚାରକଗଣ ପୁରୁଷୋତ୍ତମ କ୍ଷେତ୍ରକୁ ଆସି ଏଠାରେ ନିଜ ନିଜର ମଠ ସ୍ଥାପନ କରିଥିବା ଏହାର ବଡ଼ ପ୍ରମାଣ । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବାଦି ଧର୍ମମତର ଏକତ୍ର ସହାବସ୍ଥାନ ଲାଗି ଓଡ଼ିଶାରେ ଯେ ଏକ ସୁନ୍ଦର ପରିବେଶ ସେତେବେଳେ ସୃଷ୍ଟି ହୋଇ ପାରିଥିଲା, ତାହା ଏହି ବିରଜା ମଣ୍ଡଳର ସ୍ଥାପତ୍ୟ ଏବଂ ପ୍ରାଚୀ ଉପତ୍ୟକାର ପ୍ରତ୍ନତାତ୍ତ୍ୱିକ ସର୍ଭେରୁ ସ୍ପଷ୍ଟ ଜଣାପଡ଼େ । * ବିଶେଷତଃ ଶୈବ ଓ ବୈଷ୍ଣବ ମତ ମଧ୍ୟରେ ସେତେବେଳେ ଯେ ଏକ ଚମତ୍କାର ସହନଶୀଳତା ପ୍ରକାଶ ପାଇଥିଲା, ତାହା ଲିଙ୍ଗରାଜଙ୍କୁ

---

* ଏ ସମ୍ପର୍କରେ ଦ୍ରଷ୍ଟବ୍ୟ :—ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର (ପ୍ରଥମ ବିରଜା ବକ୍ତୃତାମାଳା–୧୯୭୩)–ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏବଂ Prachi Valley—Edited by P. K. Ray, Orissa State Archaeology, Bhubaneswar (1975).

'ହରିହର' ରୂପେ ଗ୍ରହଣ ପୂର୍ବକ ପୂଜାରାଧନା କରିବା ଘଟଣାରୁ ପ୍ରତୀୟମାନ ହୁଏ ।

ଏହି ଧର୍ମୀୟ ପୃଷ୍ଠଭୂମି ଉପରେ ପଞ୍ଚଦଶ ଶତାବ୍ଦୀ ଆଦ୍ୟ ଭାଗରେ ସୂର୍ଯ୍ୟବଂଶୀ ଗଜପତିମାନଙ୍କ ରାଜତ୍ୱ (୧୪୩୫—୧୫୪୦) ଆରମ୍ଭ ହୋଇଥିଲା । ଗଜପତି ରାଜାମାନେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ଇଷ୍ଟଦେବତା ଭାବେ ଗ୍ରହଣ କରିଥିଲେ । ଗଜପତି କପିଳେଶ୍ୱର ଦେବଙ୍କ ମନ୍ତ୍ରୀ ଗୋପୀନାଥ ମହାପାତ୍ରଙ୍କ ଆଦେଶରେ ଖୋଦିତ କଟକ ଗୋପୀନାଥପୁର ସଂସ୍କୃତ ଶିଳାଲେଖରେ ଉଲ୍ଲେଖ ଅଛି ଯେ—ଶ୍ରୀଜଗନ୍ନାଥଙ୍କ ଆଦେଶରେ ହିଁ କପିଳେଶ୍ୱର ଦେବ ଓଡ଼ିଶାରେ ଆବିର୍ଭୂତ ହୋଇଥିଲେ । ସ୍ୱୟଂ କପିଳେଶ୍ୱର ଦେବ (୧୪୩୫-୭୦) ପୁଣି ଜଗନ୍ନାଥ ମନ୍ଦିରର ଏକ ଶିଳାଲେଖରେ ଘୋଷଣା କରିଥିଲେ—"ଯେ ଶ୍ରୀଜଗନ୍ନାଥ ମୋହର ବାହିଜ ଅଭ୍ୟନ୍ତର ସମସ୍ତ ତ ଜାଣୁ । ମୋହର ଯେତେ ରତନ ପଦାର୍ଥ ଅଛି ସେ ତୋହର । ଏହା ଓ ଏହାଉଁ ଆବର ଆନ ଧନ ଜିବ ଅଛି ମୁଇ ବ୍ରାହ୍ମଣ ହାତରେ ଯେତେ ଦେଇ ପାରଇ ତାହା ଦେବି । ଏ ଭୂମିଖଣ୍ଡ ତୁ ଯାହାକୁ ଅନୁଗ୍ରହ କରିଥା । ମୋହର କେଂବେ ନୁହେଁ ।" ଗଜପତି ପୁରୁଷୋତ୍ତମ ଦେବ (ରାଜତ୍ୱ କାଳ ୧୪୭୦—୯୭) ଏବଂ ଗଜପତି ପ୍ରତାପରୁଦ୍ର ଦେବ (ରାଜତ୍ୱକାଳ : ୧୪୯୭—୧୫୪୦) ମଧ୍ୟ କପିଳେଶ୍ୱର ଦେବଙ୍କ ପନ୍ଥା ଅନୁସରଣ କରିଥିବାର ଜଣାପଡ଼େ । ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ଶାସକବର୍ଗ ଇଷ୍ଟଦେବତାର ମର୍ଯ୍ୟାଦା ଦେବା ସେତେବେଳେ ଧର୍ମ ଦୃଷ୍ଟିରୁ ଭଣା ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ଏହାଦ୍ୱାରା ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ଧର୍ମ ଓ ସାଂପ୍ରଦାୟିକ ମତର ସମବାୟରେ ଜଗନ୍ନାଥଙ୍କ ଉଦାର ସ୍ଥିତିର ମହତ୍ତ୍ୱ ଉଦ୍‌ଘୋଷିତ ହୋଇଛି ଏବଂ ବିଭିନ୍ନ ଦେବଦେବୀଙ୍କର ଭାବମୂର୍ତ୍ତି ଚତୁର୍ଦ୍ଧା ମୂରତିରେ ଆରୋପ କରଯାଇ ଶ୍ରୀଜଗନ୍ନାଥଙ୍କୁ ସମସ୍ତଙ୍କ ଊର୍ଦ୍ଧ୍ୱରେ ସ୍ଥାନ ଦିଆଯାଇଛି । ସେଥିପାଇଁ ଗବେଷକ ପଣ୍ଡିତମାନେ ସ୍ୱତନ୍ତ୍ର ଭାବେ 'ଜଗନ୍ନାଥ ଧର୍ମ' ଅଭିଧାର ଅବତାରଣା କରିଛନ୍ତି । ବସ୍ତୁତଃ ଜଗନ୍ନାଥ ଧର୍ମ ଭାରତବର୍ଷରେ ବିଭିନ୍ନ ସମୟରେ ପ୍ରବର୍ତ୍ତିତ ବହୁ ବୈଦିକ-ଅବୈଦିକ, ଆର୍ଯ୍ୟ-ଅନାର୍ଯ୍ୟ ଆଧ୍ୟାତ୍ମିକ ଚିନ୍ତାର ଏକ ମିଶ୍ର ବା ମିଳିତ ରୂପ । ଆମ୍ଭମାନଙ୍କର ଲକ୍ଷ୍ୟ କରିବାର କଥା ଯେ—ଏହି ମିଶ୍ର ରୂପରେ ଜଗନ୍ନାଥ ଧର୍ମ ନିଜସ୍ୱ ହରାଇ ନାହିଁ; ବରଂ ବିଭିନ୍ନ

ମଚର୍ଚ୍ଚ ଠିକ ଠିକ ଆଚରଣ କରି ଏହି ଡିକୋଉମ ଧର୍ମ ହୋଇଛି ସାର୍ବଜନୀନ । ଷୋଡ଼ଶ ଶତାବ୍ଦୀ ଶେଷ ଭାଗର କବି ବିପ୍ର ଦିବାକର ଦାସ ଆପଣା 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ଏହି କଥାଟିକୁ ଅତି ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି —

ସମସ୍ତ ବୈଷ୍ଣବ ପୂଜିବ । ଆପଣା ସୂତ୍ର ନ ଛାଡ଼ିବ ॥ ୧୬୧

× × × ×

ସମସ୍ତ ସଙ୍ଗେ ପ୍ରୀତି ହେବ । ନିଜ ଭାବରେ ଦୃଢ଼େ ଥିବ ॥ ୧୬୪

ଶାସକବର୍ଗଙ୍କ ସହିତ ଓଡ଼ିଶାର ଜନସାଧାରଣ ମଧ୍ୟ ସେତେବେଳେ ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରଦେବତା ରୂପେ ଗ୍ରହଣ କରି ନେଇଥିବାର ଜଣାପଡ଼େ ଏବଂ ଧର୍ମସାଧନା କ୍ଷେତ୍ରରେ ସହନଶୀଳତା ଓ ସମନ୍ୱୟବାଦ ପସନ୍ଦ କରିଥିବାର ମନେ ହୁଏ । ରାଜାନୁଗତ ଧର୍ମ ଅଥବା 'ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ' କଥାଗୁଡ଼ିକ ଏ କ୍ଷେତ୍ରରେ ଆମକୁ ବରାବର ସ୍ମରଣ ରଖିବାକୁ ହେବ । ନାରାୟଣାନନ୍ଦ ଅବଧୂତଙ୍କର 'ରୁଦ୍ରସୁଧାନିଧି' ଏବଂ ଶାରଳା ଦାସଙ୍କ 'ମହାଭାରତ' ପ୍ରଭୃତି ତତ୍କାଳୀନ ରଚନାରୁ ଏହାର ପ୍ରମାଣ ମିଳିଥାଏ । ଆପଣା 'ମହାଭାରତ'ର ଆଦି ପର୍ବରେ ହିଁ କବି ଶାରଳା ଦାସ ଗଣେଶ, ଶାରଳା ଦେବୀ, ଶିବ, ବିଷ୍ଣୁଙ୍କର ଅବତାର ପରଶୁରାମ ଓ ରାମଚନ୍ଦ୍ର ପ୍ରଭୃତି ବିଭିନ୍ନ ଦେବଦେବୀଙ୍କଠାରେ ଭକ୍ତି-ନିବେଦନ କରିଛନ୍ତି—

୧ । ଶ୍ରୀ ବିଘ୍ନରାଜ ଚରଣେ ମୋର ସେବା
ଯେ ମହାଭାରଥ କହିବି ମୋତେ ପ୍ରସନ୍ନ ହୋଇବା—ଆଦି, ପୃଷ୍ଠା : ୩

୨ । ଶ୍ରୀ ସାରଳା ଚଣ୍ଡୀ ନାମେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁଂ ଯେ ସାରଳଦାସ କବି ।
ପ୍ରସନ୍ନେଣ ଆଜ୍ଞା ମୋତେ ଦିଲେ ଶାକାମ୍ଭରୀ
ଭାଭ ତୁ କପିଳାସ ଶ୍ରୀମହାଭାରଥ କରି ।—ଆଦି, ପୃଷ୍ଠା : ୫

୩ । ତ୍ରିପୁରାରି ପାଦ ପଙ୍କଜେ ଅଙ୍କିତ ମୋର ଶିରେ
ଶୁଦ୍ରମୁନି ସାରଳ ଦାସ ପ୍ରଣମିତେ ବିଶ୍ୱେଶ୍ୱରେ ।—ଆଦି, ପୃଷ୍ଠା : ୯୫

୪ । ଯଦ୍ୟପି ଶ୍ରୀରାମ ମୁଂ ଦେଖନ୍ତି ବେନି ଡୋଳେ
ସ୍ନାହାନ ଭୋଜନ ମୁହିଂ ଚେଜନ୍ତି ସର୍ବକାଳେ ।

× × ×

ଶ୍ରୀ ଜାନକୀବଲ୍ଲଭ ଚରଣେ ନିଜ ଦାସ
ଶୁଦ୍ରମୁନି ସାରଳା ଦାସକୁ ବୈକୁଣ୍ଠରେ ଦେବା ବାସ ।

—ଆଦି, ପୃ : ୫୦୬

(ଓଡିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ 'ଶାରଳା ମହାଭାରତ'ର ପ୍ରଥମ ସଂସ୍କରଣ—୧୯୬୫ରୁ ଉଦ୍ଧୃତିଗୁଡ଼ିକ ଗୃହୀତ)

ପରବର୍ତ୍ତୀ କାଳରେ ବିଭିନ୍ନ ସନ୍ଥ ଓ ଭକ୍ତକବି ଅନୁରୂପ ସମନ୍ୱୟବାଦର ସମର୍ଥକ ଥିବାର ଜଣାପଡ଼େ । କବି ଜଗନ୍ନାଥ ଦାସ ମୁକ୍ତ କଣ୍ଠରେ ଗାଇଛନ୍ତି—

ନମସ୍ତେ ପ୍ରଭୁ ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ॥

× × × ×

ତୁ ବ୍ରହ୍ମା ରୁଦ୍ର ବିଷ୍ଣୁ ତୁହି । ତୋ ବିନୁ ଅନ୍ୟ ଗତି ନାହିଁ ॥
ସୃଷ୍ଟି ତୋହର ଖେଳ ଘର । ଅଶେଷ ମାୟା ତୋ ଆବର ॥
ତୋହର ନିଃଶ୍ୱାସ ମରୁତ । ଦେବେ ହୋଇଲେ ତହୁଁ ଜାତ ॥
ତୁହିଟି ଅଗ୍ନି ଦେବ ଇନ୍ଦ୍ର । ନୟନୁ ଜାତ ସୂର୍ଯ୍ୟ ଚନ୍ଦ୍ର ॥
ଭୁଜରୁ ଅନନ୍ତ ମୂରତି । କଣ୍ଠରୁ ଜାତ ସରସ୍ୱତୀ ॥

× × × ×

ହୋଇଲୁ ଦଶ ଅବତାର । ନାଶିଲୁ ଅବନୀର ଭାର ॥
ଦୁଷ୍ଟ ନିବାରି ସନ୍ଥ ପାଳୁ । ତୁ ନାଥ ପରମ ଦୟାଳୁ ॥

—ଓଡ଼ିଆ ଭଜନ, ପ୍ରଥମ ଖଣ୍ଡ—ସାଂସ୍କୃତିକ ବ୍ୟାପାର ବିଭାଗ, ଭୁବନେଶ୍ୱର (୧୯୭୪) ଗ୍ରନ୍ଥରୁ ଗୃହୀତ ।

ଧର୍ମ ସାଧନା କ୍ଷେତ୍ରରେ ଏହି ଉଦାର ଦୃଷ୍ଟି ଓ ସମନ୍ୱୟବାଦ କେବଳ ମାତ୍ର ଓଡ଼ିଶାର ଜଗନ୍ନାଥ ଧର୍ମରେ ରହିଛି ବୋଲି ଭାବିଲେ, ଆମେ ବୋଧହୁଏ ଭୁଲ କରିବା । ଏହା ହିଁ ଥିଲା ପ୍ରାଚୀନ ଭାରତୀୟ ପରମ୍ପରା । ଏହାକୁ ମଧ୍ୟ

ଆପଣମାନେ ସନାତନ ହିନ୍ଦୁ ଧର୍ମର ପରମ୍ପରା କହି ପାରନ୍ତି । ଖ୍ରୀଷ୍ଟପୂର୍ବ ଯୁଗରୁ ଭାରତକୁ ବିଭିନ୍ନ ସମୟରେ ଆସିଛନ୍ତି— ଗ୍ରୀକ୍, ଶକ, ହୁଣ ପ୍ରଭୃତି ବୈଦେଶିକ-ମାନେ । କିଞ୍ଚିତ୍ ପରବର୍ତ୍ତୀ କାଳରେ ଖ୍ରୀଷ୍ଟିୟାନ୍ ଓ ମୁସଲମାନମାନେ ମଧ୍ୟ ଆସିଛନ୍ତି । ସାମାନ୍ୟ ସାମୟିକ ପ୍ରତିକ୍ରିୟା ପରେ ହିଁ ସେମାନେ ହିନ୍ଦୁ ଜଗତ୍‌ରେ ଗୃହୀତ ହୋଇଛନ୍ତି । ରବୀନ୍ଦ୍ରନାଥଙ୍କ ଭାଷାରେ "ଏଇ ଭାରତେର୍ ମହା-ମାନବେର୍ ସାଗରତୀରେ" ସମସ୍ତେ "ଏକ ଦେହରେ ଲୀନ" ହୋଇ ଯାଇଛନ୍ତି । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ତକ୍ଷଶିଳା-ନିବାସୀ ଗ୍ରୀକ୍ ହେଲିଓଡରସ୍ ବୈଷ୍ଣବ ହୋଇ ବିଷ୍ଣୁ-ମନ୍ଦିରର ଗରୁଡ଼ ଧ୍ୱଜ ତିଆରି କରି ଦେଇଛନ୍ତି—ଶକ, ହୁଣମାନେ ରୀତିମତ ଶିବଭକ୍ତ ପାଲଟି ଯାଇଛନ୍ତି । ସେହି ପ୍ରାଚୀନ ଭାରତୀୟ ସମାଜରେ ବିପୁଳ ଜୀବନଶକ୍ତି ଥିବାରୁ ହିଁ ଏପରି ଏକୀକରଣ ବା ସମୀକରଣ ସେତେବେଳେ ସମ୍ଭବ ହୋଇଥିଲା । ଏପରି କି, ପରବର୍ତ୍ତୀ କାଳରେ ଏହି ଜୀବନ-ଶକ୍ତି ଯେତେବେଳେ ଊଣା ହୋଇ ଯାଇଛି, ସେତେବେଳେ ମଧ୍ୟ ଭାରତୀୟ ସମାଜ ଜୀବନରେ ଉଦାର ସମନ୍ୱୟବାଦୀ ଦୃଷ୍ଟିକୋଣର ଅଭାବ ଘଟି ନାହିଁ । ପଞ୍ଚଦଶ ଶତାବ୍ଦୀ ଶେଷ ଭାଗରେ ପର୍ତ୍ତୁଗୀଜ୍‌ମାନଙ୍କ ଭାରତ ଆଗମନ କାଳରେ ଭାରତରେ ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ସଂଖ୍ୟା ଥିଲା—ଦୁଇ ଲକ୍ଷ ।* ଏ ଦେଶରେ ସେମାନେ ଏତେ ସଂଖ୍ୟାରେ ଦେଖାଦେଲେ କିପରି ? ସେହିପରି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଆରବ ଭୂଖଣ୍ଡରେ ଇସଲାମ୍ ଧର୍ମ ପ୍ରବର୍ତ୍ତିତ ହେବାର ଅଳ୍ପ କେତେ ବର୍ଷ ମଧ୍ୟରେ—ତାହା ପୁଣି ୭୧୨ ମସିହାରେ ସିନ୍ଧୁ-ବିଜୟ ପୂର୍ବରୁ—ଭାରତରେ ମୁସଲମାନମାନେ ସ୍ଥାନ ଲାଭ କଲେ କିପରି ? ତାହାର କାରଣ – ଭାରତରେ ହିନ୍ଦୁ ସମାଜ ମୁକ୍ତବାହୁ ହୋଇ ସେତେବେଳେ ଖ୍ରୀଷ୍ଟିୟାନ୍ ଓ ମୁସଲମାନଙ୍କୁ ଆଲିଙ୍ଗନ କରି ନେଇଥିଲା । ଦକ୍ଷିଣ ଓ ପଶ୍ଚିମ ଭାରତରେ ହିନ୍ଦୁ ରାଜାମାନେ ଖ୍ରୀଷ୍ଟିୟାନ୍ ଏବଂ ଇସଲାମ୍ ସାଧକମାନଙ୍କୁ ଭୂମିଦାନ କରି ସେତେବେଳେ ଏହି ବିଦେଶୀ ଧର୍ମଗୁଡ଼ିକର ପ୍ରସାର ପାଇଁ ସୁବିଧା କରି ଦେଇଥିଲେ । ଖ୍ରୀଷ୍ଟିୟାନ୍ ଓ ମୁସଲମାନଙ୍କ ତରଫରୁ ମଧ୍ୟ ସମୀକରଣ ପାଇଁ

---

* ବାଂଲା ସାହିତ୍ୟେ ଇଉରୋପୀୟ ଲେଖକ–ସବିତା ଚଟ୍ଟୋପାଧ୍ୟାୟ, ଫାର୍ମା କେ: ଏଲ୍: ମୁଖୋପାଧ୍ୟାୟ, କଲିକତା (୧୯୭୨)—ପୃଷ୍ଠା ୨ ।

ମୈତ୍ରୀ-ପ୍ରୀତିର ବାହୁ ପ୍ରସାରିତ ହୋଇ ଆସିଥିଲା । ଦ୍ୱାଦଶ ଶତାବ୍ଦୀର ସୁଫୀ ସନ୍ଥ ମୋଇନୁଦ୍ଦିନ୍ ଚିସ୍ତୀଙ୍କର ଏକ ଶ୍ରେଣୀର ଭକ୍ତମାନେ ନିଜକୁ 'ହୁସେନୀ ବ୍ରାହ୍ମଣ' ବୋଲି ପରିଚିତ କରାଇ ଉଭୟ ହିନ୍ଦୁ ଓ ଇସଲାମୀ ଆଚାର, କର୍ମପଦ୍ଧତି ଗ୍ରହଣ କରିଥିଲେ । ସପ୍ତଦଶ ଶତାବ୍ଦୀର ଇଟାଲୀ ଦେଶୀୟ ଖ୍ରୀଷ୍ଟିୟାନ୍ ପାଦ୍ରୀ ନୋବିଲି ଦାକ୍ଷିଣାତ୍ୟ ଅବସ୍ଥାନ କାଳରେ ଆପଣାକୁ 'ରୋମାନ୍ ବ୍ରାହ୍ମଣ' ବୋଲି କହୁଥିଲେ ଏବଂ ବ୍ରାହ୍ମଣର ବେଶପୋଷାକ ପରିଧାନ ପୂର୍ବକ ନିରାମିଷ ଭୋଜନ, ହିନ୍ଦୁ ବ୍ରତ ପାଳନାଦି ଆଚାର-ଅନୁଷ୍ଠାନରେ ଅଭ୍ୟସ୍ତ ଥିଲେ ।*

କିନ୍ତୁ କାଳକ୍ରମେ ଭାରତୀୟ ସମାଜ-ଜୀବନ ଅଧୋଗତ, ଅବକ୍ଷୟମୁଖୀ ହେବାରୁ ଧର୍ମସାଧନା କ୍ଷେତ୍ରରେ ଏହି ସହନଶୀଳତା ଓ ସମନ୍ୱୟବାଦ କ୍ଷୀଣ ହୋଇ ଗଲା । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ବେଳକୁ ଏହି ଦୁରବସ୍ଥା ଆରମ୍ଭ ହୋଇ ଯାଇଥିବାର ସୂଚନା ଇସଲାମୀ ପର୍ଯ୍ୟଟକ ଅଲ୍‌ବିରୁଣୀଙ୍କ ଭାରତ ବିବରଣୀରୁ ମିଳିଥାଏ । ଏହାର ପ୍ରାୟ ଚାରି ଶହ ବର୍ଷ ପୂର୍ବର ଚୀନା ପର୍ଯ୍ୟଟକ ହୁଏନସାଂଙ୍କ ବିବରଣୀରୁ ଭାରତ ସଂପର୍କରେ ମୋଟାମୋଟି ଯେଉଁ ଉଜ୍ଜ୍ୱଳ ଚିତ୍ର ମିଳେ, ଅଲ୍‌ବିରୁଣୀଙ୍କ ବିବରଣୀରୁ ତାହା ମିଳି ନ ଥାଏ । ଭାରତୀୟ ସମାଜ-ଜୀବନରେ ସେତେବେଳକୁ କ୍ଷୁଦ୍ର ସଂକୀର୍ଣ୍ଣତା, ଅନୁଦାର ରକ୍ଷଣଶୀଳତା ଏବଂ ଯୁଗୋପଯୋଗୀ ପରିବର୍ତ୍ତନ ପ୍ରତି ବିମୁଖ ଭାବ ପ୍ରକଟିତ ହୋଇଥିବାର ଅଲ୍‌ବିରୁଣୀ ଉଲ୍ଲେଖ କରିଛନ୍ତି । ଉତ୍ତର ଓ ପଶ୍ଚିମ ଭାରତରେ ଯେଉଁ ଦୁର୍ଗତି ଏକାଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିଲା, ଓଡ଼ିଶାରେ ତାହା ଆରମ୍ଭ ହେଲା—ପ୍ରାୟ ପାଞ୍ଚ ଶହ ବର୍ଷ ପରେ, ଅର୍ଥାତ୍ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ । ପ୍ରତାପରୁଦ୍ର ଦେବ ସେତେବେଳେ ଓଡ଼ିଶାର ଗଜପତି ରାଜା । ରାଜ୍ୟର ତିନି ପାଖରେ ସେତେବେଳକୁ ମୁସଲମାନ ଆଧିପତ୍ୟ ପ୍ରତିଷ୍ଠିତ ହୋଇଛି । ଓଡ଼ିଆ

* ଏ ସଂପର୍କରେ ଦ୍ରଷ୍ଟବ୍ୟ—ଭାରତୀୟ ମଧ୍ୟଯୁଗେ ସାଧନାର ଧାରା —ଶ୍ରୀ କ୍ଷିତିମୋହନ ସେନ, କଲିକତା ବିଶ୍ୱବିଦ୍ୟାଳୟ (୧୯୩୦) ଏବଂ କାଲିକଟ୍ ଥେକେ ପଲାସୀ—ଶ୍ରୀ ସତୀନ୍ଦ୍ରମୋହନ ଚଟ୍ଟୋପାଧ୍ୟାୟ... 

ଜାତିର ଶୌର୍ଯ୍ୟବୀର୍ଯ୍ୟର ଜ୍ୱଳନ୍ତ ଶିଖା ମଳିନ ପଡ଼ିଯାଇଛି । ଆପଣା ସାମ୍ରାଜ୍ୟର ଦକ୍ଷିଣାଂଶ ଓ ସୁପୁତ୍ର ବୀରଭଦ୍ରଙ୍କୁ ହରାଇ, ଏବଂ ଆଦରଣୀୟା କନ୍ୟା ଜଗନ୍ମୋହିନୀଙ୍କୁ ରାଜନୈତିକ ପଣାଂଖଳରେ ଘୋଟା ରୂପେ ଚଢ଼ାଇ ପ୍ରତାପରୁଦ୍ର ଦେବ ଦୁଃଖ, ହତାଶା ଓ ଆତ୍ମଗ୍ଲାନିରେ ମୁହ୍ୟମାନ । ଶେଷରେ ଶ୍ରୀଚୈତନ୍ୟ-ପ୍ରଚାରିତ ମଧୁର ଭକ୍ତିଧର୍ମର ପ୍ରଭାବ ଆବେଗରେ ଗଜପତି ସେହି ଆତ୍ମଗ୍ଳାନି ଓ ନୈତିକ ପରାଜୟକୁ ପାସୋରି ପକାଇବାକୁ ଚେଷ୍ଟା କରିଛନ୍ତି । ଚୈତନ୍ୟ ୧୫୧୦ ମସିହାରେ ଓଡ଼ିଶା ଆସି, ଦେହାବସାନ ପର୍ଯ୍ୟନ୍ତ ଦୀର୍ଘକାଳ ପୁରୀରେ ରହି ଜଗନ୍ନାଥଙ୍କୁ ଆରାଧ୍ୟ ରୂପେ ଗ୍ରହଣ ପୂର୍ବକ କାଶୀ ମିଶ୍ର, ରାୟ ରାମାନନ୍ଦ ପ୍ରମୁଖ ପାତ୍ରମନ୍ତ୍ରୀଙ୍କ ଜରିଆରେ ଏଠାରେ ଆପଣା ବୈଷ୍ଣବ ମତର ବହୁଳ ପ୍ରସାର ଘଟାଇଥିଲେ । ତାଙ୍କ ପ୍ରଚାରିତ ଧର୍ମରେ ଆଚାରନିଷ୍ଠ କର୍ମକାଣ୍ଡ ଗୁରୁତ୍ୱ ଲାଭ କରି ନ ଥିଲା ଏବଂ ଆରାଧ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଭାବାବେଗ-ସଞ୍ଚାରୀ ଭଜନ-କୀର୍ତ୍ତନ ପରିପୂର୍ଣ୍ଣ ପ୍ରେମଭକ୍ତି ହିଁ ପ୍ରଧାନ କଥା ଥିଲା । ଭକ୍ତିଧର୍ମ ସାଧାରଣତଃ ଜନସମାଜର ଆତ୍ମପ୍ରତ୍ୟୟ ଓ ଆଭ୍ୟନ୍ତରିକ ଶକ୍ତିହାନିର ବାହ୍ୟ ପରିପ୍ରକାଶ, ଯାହାକି ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଜାତିକୁ ପରାଙ୍ମୁଖ କରି ପକାଏ । * କେବଳ ଗଜପତି ପ୍ରତାପରୁଦ୍ର ନୁହନ୍ତି, ତାଙ୍କର ସେନା-ବାହିନୀ, ରାଜକର୍ମଚାରୀ ତଥା ପ୍ରଜାବର୍ଗ ସେତେବେଳେ ସେହି ଭକ୍ତିଧର୍ମରେ ଅନୁପ୍ରାଣିତ ହୋଇଥିଲେ । ଓଡ଼ିଶାର ତେତ୍କାଳୀନ ବୁଦ୍ଧିଜୀବୀ ପଣ୍ଡିତମାନେ ପ୍ରଥମେ ପ୍ରଥମେ ଏହି ଧର୍ମକୁ ମନପ୍ରାଣରେ ଗ୍ରହଣ କରି ନଥିଲେ ମଧ୍ୟ କ୍ରମଶଃ ଏହା ରାଜ୍ୟର ଗଣଧର୍ମରେ ପରିଣତ ହୋଇ ପାରିଥିଲା । ଊନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ପରବର୍ତ୍ତୀ ପ୍ରାୟ ତିନିଶହ ବର୍ଷ କାଳ ଓଡ଼ିଶାରେ ଆମେ ଏହି ବୈଷ୍ଣବ ଧର୍ମର ପ୍ରାବଲ୍ୟ ହିଁ ଦେଖିବା । କେତେକ ଐତିହାସିକଙ୍କ ମତରେ — ଏହାର ପରିଣତି ବିଶେଷ ଲାଭଜନକ ନ ହୋଇ ବରଂ କ୍ଷତିକାରକ ହେଲା । ଓଡ଼ିଶାର ଶାସନ-କାର୍ଯ୍ୟରେ ସେତେବେଳେ ଯେଉଁ ଦୁର୍ଗତି ଓ ଶିଥିଳତା ଦେଖା-ଦେଇଥିଲା, ତାହାର ଏକ ଚିତ୍ର ଷୋଡ଼ଶ ଶତାବ୍ଦୀ ମଧ୍ୟ ଭାଗରେ ରଚିତ କୃଷ୍ଣଦାସ

---

* Introduction by Dr. H. K. Mahtab to History of Orissa, Vol. I—by Dr. N. K. Sahu, Utkal University (1964).

କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରୁ ମିଳିଥାଏ । ଭବାନନ୍ଦ ପଟ୍ଟନାୟକଙ୍କର ଦୁଇ ପୁତ୍ର ଉଚ୍ଚ ପଦସ୍ଥ ରାଜକର୍ମଚାରୀ ଗୋପୀନାଥ ପଟ୍ଟନାୟକ ଓ ରାୟ ରାମାନନ୍ଦ ପଟ୍ଟନାୟକଙ୍କୁ ଗୁରୁତର ଦୋଷତ୍ରୁଟି ସତ୍ତ୍ୱେ ଗଜପତି ପ୍ରତାପରୁଦ୍ର ଦେବ ଏଇଭଳି ବ୍ୟବହାର ଦେଖାଇଥିଲେ—

ଭବାନନ୍ଦେର ପୁତ୍ର ସବ ମୋର୍ ପ୍ରିୟତମ୍
ଇହା ସବାକାରେ ଆମି ଦେଖି ଆତ୍ମା ସମ ।
ଅତଏବ ଯାହା ଯାହା ଦେଡ ଅଧିକାର
ଖାୟ ପିୟେ ଲୁଟେ ବିଲୟ ନା କରେ ବିଚାର ।
ରାଜମହେନ୍ଦ୍ରୀର ରାଜା କୈନୁ ରାମ ରାୟ
ଯେ ଖାଇଲ ଯେବା ଦିଲ ନାହି ଲେଖା ଦାୟ ।

—ଅନ୍ତ୍ୟଲୀଳା : ନବମ ପରିଚ୍ଛେଦ ।

ସ୍ୱୟଂ ଚୈତନ୍ୟ ଧର୍ମାଚରଣ ଓ ଧର୍ମପ୍ରଚାର କ୍ଷେତ୍ରରେ କୌଣସି ପ୍ରକାର ଦୁର୍ବଳତା ପ୍ରକାଶ କରି ନ ଥିବାର ଜଣାପଡ଼େ । କିନ୍ତୁ ତାଙ୍କ ପ୍ରତିପାଦିତ ମଧୁର ଭକ୍ତି ଓ ଅନ୍ତରଙ୍ଗ ସାଧନା ସାଧାରଣ ଜନତା ଠିକ୍ ଭବରେ ଗ୍ରହଣ କରି ପାରିଲେ ନାହିଁ । ଫଳରେ ସେହି ଧର୍ମାଚରଣ ଦ୍ୱାରା ଓଡ଼ିଆଜାତି କ୍ରମଶଃ ଦୁର୍ବଳ ଓ ପୌରୁଷହୀନ ହୋଇ ପଡ଼ିଲା । ଆଧିଭୌତିକ କର୍ତ୍ତବ୍ୟକର୍ମ ଅପେକ୍ଷା ଆଧିଦୈବିକ ଶକ୍ତି ଉପରେ ଅଧିକ ନିର୍ଭରଶୀଳ ହେଲେ—ପାଇକ ବାହିନୀର ସାହସ ଓ ବାହୁବଳ ନିସ୍ତେଜ ହୋଇ ପଡ଼ିଲା—ସମାଜଜୀବନକୁ ଧୀରେ ଧୀରେ ଆଚ୍ଛନ୍ନ କରି ପକାଇଲା ଏକ ପ୍ରକାର ମର୍ମଘାତୀ ମୋହ ଓ ଜଡ଼ତା । ଏହି ଦୁରବସ୍ଥାର ଚିତ୍ର ତତ୍କାଳୀନ ରଚନାବଳୀରେ ବିଶେଷ ନଥିଲେ ମଧ୍ୟ, ଏହାର ସୂଚନା କବି ବଳରାମ ଦାସଙ୍କ 'ଜଗମୋହନ ରାମାୟଣ,' 'ଲକ୍ଷ୍ମୀପୁରାଣ,' 'ଭଗବଦ୍ ଗୀତା' ପ୍ରଭୃତିରୁ ମିଳିଥାଏ । ଏହି ଦୁର୍ଗତିର ଅପରିହାର୍ଯ୍ୟ ପରିଣତି ସ୍ୱରୂପ ପ୍ରତାପରୁଦ୍ର ଦେବଙ୍କ ମୃତ୍ୟୁର ମାତ୍ର ସତେଇଶ ବର୍ଷ ମଧ୍ୟରେ ଓଡ଼ିଶାକୁ ପରାଧୀନତାର ଅନ୍ଧକାର ଘୋଟି ଆସିଲା—୧୫୬୮ ମସିହାରେ ଏଇ ନିକଟସ୍ଥ ଐତିହାସିକ ଗୋହେଶ୍ୱର ପାଟଣା ବା ଗୋହିରାଟିକିରୀଠାରେ ଉତ୍କଳୀୟ ସ୍ୱାଧୀନତାର ସୂର୍ଯ୍ୟ ଅସ୍ତମିତ ହୋଇଗଲା ଦୀର୍ଘ ତିନି ଶହ ଅଠସ୍ତରୀ ବର୍ଷ ପାଇଁ ।

୧୫୬୮ରୁ ୧୮୬୮ ମସିହା—ଅର୍ଥାତ୍ ମୁସଲମାନ ରାଜତ୍ୱ ଆରମ୍ଭଠାରୁ ନଅଙ୍କ ଦୁର୍ଭିକ୍ଷରୁ ଉଦ୍ଧାର ପାଇବା ପର୍ଯ୍ୟନ୍ତ—ଏହି ତିନି ଶହ ବର୍ଷ ଓଡ଼ିଶା ପକ୍ଷରେ ଏକ ଅନ୍ଧକାର-ଯୁଗ କହିଲେ ଚଳେ । ପ୍ରଥମେ ଆଫଗାନ୍ ରାଜତ୍ୱ (୧୫୬୮—୯୨) ଏବଂ ତାପରେ ମୋଗଲ ରାଜତ୍ୱ (୧୫୯୨–୧୭୫୧) ଅମଳର ଦେଢ଼ ଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଏଠାରେ ଇସଲାମ୍ ଧର୍ମ ପ୍ରସାର ଲାଭ କରିବା ପାଇଁ ସୁବିଧା ପାଇଲା । ଶାସନ-କାର୍ଯ୍ୟ ପରିଚାଳନା ପାଇଁ ବହିରାଗତ କେତେକ ମୁସଲମାନ ତ ଓଡ଼ିଶାରେ ଆସି ରହିଲେ ! ତାହା ବ୍ୟତୀତ ଧର୍ମାନ୍ତରୀକରଣ ପ୍ରକ୍ରିୟାରେ ହିନ୍ଦୁମାନେ ମଧ୍ୟ ଇସଲାମ୍ ଧର୍ମ ଗ୍ରହଣ କଲେ । ଷୋଡ଼ଶ ଶତାବ୍ଦୀ ଓଡ଼ିଶାରେ ଅତି ଅଳ୍ପସଂଖ୍ୟକ ମୁସଲମାନ ଥିଲେ ଏବଂ ସେମାନେ ସମସ୍ତେ ଭଲ ଯୋଦ୍ଧା ଥିଲେ ବୋଲି ପର୍ତ୍ତୁଗୀଜ୍ ପର୍ଯ୍ୟଟକ ଡୁଆର୍ଟେ ବାରବୋସା ଆପଣା 'ଓଟିଶା' ରାଜ୍ୟ ବିବରଣୀରେ ଲେଖି ଯାଇଛନ୍ତି । * ଅବଶ୍ୟ କାଳକ୍ରମେ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ବହିରାଗତ ମୁସଲମାନମାନେ ସାଧାରଣତଃ ସହରବଜାର ଅଞ୍ଚଳରେ ବସବାସ କରିଥିଲେ; ମୁଖ୍ୟତଃ ଗ୍ରାମାଞ୍ଚଳର ଲୋକେହିଁ ଧର୍ମାନ୍ତରିତ ହୋଇଥିଲେ । ଏହି ଧର୍ମାନ୍ତରୀକରଣର ବାଟ ଥିଲା ତିନି ପ୍ରକାର—କିଛି ହିନ୍ଦୁଙ୍କୁ ଜୋର୍ ଜବରଦସ୍ତ ଧର୍ମାନ୍ତରିତ କରାଗଲା, ଶାସନରୁ ଲାଭ ମାରିବା ପାଇଁ କେତେକ ସୁବିଧାବାଦୀ ମଧ୍ୟ ଧର୍ମାନ୍ତର ଗ୍ରହଣ କଲେ; ଏବଂ ହିନ୍ଦୁ ଧର୍ମ ପ୍ରତି ଅନାସ୍ଥା ତଥା ନୂତନ ଧର୍ମନୀତିର ଆକର୍ଷଣରେ ସ୍ୱତଃପ୍ରବୃତ୍ତ ହୋଇ ମଧ୍ୟ ଅନ୍ୟ କେତେକ ମୁସଲମାନ ହୋଇଗଲେ । ତଥାପି ବଙ୍ଗ ଦେଶ ଭଳି ଓଡ଼ିଶାରେ ଲୋକେ ବହୁ ସଂଖ୍ୟାରେ ଧର୍ମାନ୍ତରିତ ହୋଇ ନ ଥିବାର ଜଣାପଡ଼େ । † ଯାହାହେଉ, ଓଡ଼ିଶାରେ ଇସଲାମ୍ ଧର୍ମର ମାଲ୍‌ସୁମାରି ବା ମୂଲ୍ୟାବଧାରଣ କରିବା ପୂର୍ବରୁ ଆମକୁ ସମକାଳୀନ ବୈଷ୍ଣବ ଧର୍ମର ପ୍ରଭାବ ଓ ପରିଣତି ଲକ୍ଷ୍ୟ କରିବାକୁ ହେବ । ରାଜନୈତିକ ଦିଗରୁ ମୋଗଲ ସମ୍ରାଟ ଆକବର କେନ୍ଦ୍ରୀୟ ଶାସନ ଦୃଢ଼

---

* ଓଡ଼ିଶାରେ ଇଉରୋପୀୟ ପର୍ଯ୍ୟଟକ – ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଡଗର—ଡିସେମ୍ବର, ୧୯୫୯ ସଂଖ୍ୟା ।

† ମୋଗଲ ତାମସା—ଡକ୍ଟର ହରେକୃଷ୍ଣ ମହତାବଙ୍କର ଭୂମିକା ଭାଗବତ ପ୍ରେସ୍, କଟକ (୧୯୬୬) ।

ଓଡ଼ିଶାକୁ ସଂଯୁକ୍ତ କଲାପରି, ସାଂସ୍କୃତିକ ଦିଗରୁ ଚୈତନ୍ୟ-ପ୍ରଚାରିତ ବୈଷ୍ଣବ ଧର୍ମ ଓଡ଼ିଶାକୁ ମହାଭାରତୀୟ ସ୍ରୋତ ସଙ୍ଗେ ମିଶାଇ ଦେଇ ପାରିଥିଲା । ପୂର୍ବରୁ ଯାହା ସୂଚିତ ହୋଇଛି—ଏହି ବୈଷ୍ଣବ ଧର୍ମ ଓଡ଼ିଶାର ସ୍ୱାଧୀନତା-ଲୋପର ଅନ୍ୟତମ କାରଣ ହୋଇପାରେ । ତଥାପି ପ୍ରତ୍ୟେକ କୃଷ୍ଣ ବାରିଦର ଗୋଟିଏ ଗୋଟିଏ ରଜତ ରେଖା ରହିଥାଏ । ଓଡ଼ିଶାରେ ବୈଷ୍ଣବ ଧର୍ମର ହିତକାରୀ ପ୍ରଭାବ ଦେଖାଯାଇଛି—ପ୍ରଥମତଃ ଜାତିଭେଦ ଉପରେ ଆଘାତ । ସେତେବେଳେ ଭାରତ ତଥା ଓଡ଼ିଶାରେ ଜାତିଭେଦ, ଛୁଆଁ-ଅଛୁଆଁ ଭାବ କେତେ ଦୂର ଗତି କରିଥିଲା, ତାହାର ଅଳ୍ପ କେତୋଟି ଉଦାହରଣ ଏଠାରେ ଦିଆ ଯାଇପାରେ । ଜନ୍ମ ସୂତ୍ରରୁ ନୁହେଁ, ଜୀବନଚର୍ଯ୍ୟା ଦୃଷ୍ଟିରୁ ବହୁ ପୂର୍ବରୁ ପ୍ରଚଳିତ ଚାରିଟି ଜାତି—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବ୍ୟତୀତ ସେତେବେଳକୁ ବହୁ ଉପଜାତି ଓ ମିଶ୍ରିତ ଜାତି ସୃଷ୍ଟି ହୋଇ ସାରିଥିଲା । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଭାରତ ଭ୍ରମଣରେ ଆସିଥିବା ଚୀନର ବୌଦ୍ଧ ସନ୍ନ୍ୟାସୀ ଫାହିୟାନ୍ ଲେଖିଛନ୍ତି—ଅସ୍ପୃଶ୍ୟ ଜାତିର ଲୋକେ ଯେତେବେଳେ ନଗର-ଦ୍ୱାରରେ ଅଥବା ହାଟ-ବଜାରରେ ପ୍ରବେଶ କରୁଥିଲେ, ସେତେବେଳେ ସେମାନେ କାଠ ବାଡ଼େଇ ଶବ୍ଦ କରିକରି ଆସୁଥିଲେ, ଯାହା ଦ୍ୱାରା କି ଅନ୍ୟାନ୍ୟ ଉଚ୍ଚ ଜାତିର ଲୋକେ ସେମାନଙ୍କୁ ନ ଛୁଇଁ ସତର୍କତାର ସହିତ ଆଡ଼େଇ ହୋଇରହିବେ ! ନବମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟଙ୍କ ଭଳି ମନୀଷୀ ଶୂଦ୍ରମାନେ ବେଦ ଶୁଣିବାର ଅଧିକାରୀ ନୁହନ୍ତି ବୋଲି ମନେ କରୁଥିଲେ ଏବଂ ସେଥିପାଇଁ ସେ କହିଥିଲେ ଯେ—କୌଣସି ଶୂଦ୍ର ଯଦି ବେଦବାକ୍ୟ ଶୁଣେ, ତା' ହେଲେ ଜଉ କିମ୍ବା ଶିଶା ଦ୍ୱାରା ତାହାର କାନ ମୁଦି ଦେବାକୁ ହେବ । ଓଡ଼ିଶାରେ ବହୁ ଜାତି, ମିଶ୍ରିତ ଜାତି ସମେତ କେବଳ ଶୂଦ୍ର ଜାତିରେ ଛତିଶ ଗୋଟି ପାଟକ ଥିବାର ବୋଲାଯାଏ । କେତେକ ଗଙ୍ଗବଂଶୀ ରାଜାଙ୍କର ଅଭିଲେଖରୁ ଏବଂ କବି ଅଚ୍ୟୁତାନନ୍ଦ ଦାସଙ୍କର 'ପାଟକ ଗୀତା'ରୁ ପ୍ରାୟ ସତୁରୀ ଗୋଟି ବିଭିନ୍ନ ଜାତି-ପାଟକର ପରିଚୟ ମିଳେ । * ଏହି ଜଟିଳ ଜାତିଭେଦ

* ଦ୍ରଷ୍ଟବ୍ୟ—ଗଙ୍ଗରାଜତ୍ୱରେ ବିଭିନ୍ନ ପାଟକ ଓ ହାଟ—ଶ୍ରୀ କେଦାରନାଥ ମହାପାତ୍ର, 'କୋଣାର୍କ' ପ୍ରବନ୍ଧ ବିଶେଷାଙ୍କ (୧୯୭୫) ଏବଂ ହିନ୍ଦୁସମାଜରେ ଜାତିପ୍ରଥା ଓ 'ପାଟକ ଗୀତା'—ଶ୍ରୀ ବସନ୍ତ କୁମାର ସାହୁ, 'କୋଣାର୍କ' ଷଡ଼ବିଂଶ ସଂଖ୍ୟା (୧୯୭୮) ।

ନୀତି ଦେଶର ଲାଭ ଅପେକ୍ଷା କ୍ଷତି ଘଟାଇଛି ଅଧିକ ଏବଂ ଆମର ଜାତୀୟ ସଂହତିକୁ ବରାବର କ୍ଷୁଣ୍ଣ କରି ଆସିଛି । ଭାରତରେ ଉଚ୍ଚ ବର୍ଣ୍ଣର ଅନ୍ତର୍ଭୁକ୍ତ ଜ୍ଞାନମାର୍ଗୀମାନେ ହିଁ ମୁଖ୍ୟତଃ ଜାତିଭେଦର ସମର୍ଥକ; ଭକ୍ତିମାର୍ଗର ପଥିକମାନେ ସାଧାରଣତଃ ଏପରି ଭେଦଭାବ ଉପରେ ଗୁରୁତ୍ୱ ଆରୋପ କରନ୍ତି ନାହିଁ ।* ତେଣୁ ଓଡ଼ିଶାରେ ବୈଷ୍ଣବ ଧର୍ମର ସୁପ୍ରସାର କାଳରେ ହିଁ ଜାତି ଭେଦର ନିଗଡ଼ ଶିଥିଳ ହୋଇ ପଡ଼ିଥିଲା । 'ବାର ଜାତି ତେର ଗୋଲ, ବୈଷ୍ଣବ ହେଲେ ସବୁ ଗଲ' କଥାଟି ଆମ ନିକଟରେ ବେଶ୍ ଜଣାଶୁଣା । ବୈଷ୍ଣବ ଧର୍ମର ଧ୍ୱଜା ତଳେ କେବଳ ଉଚ୍ଚ ବର୍ଣ୍ଣ ଓ ନୀଚ ବର୍ଣ୍ଣର ଲୋକେ ଏକତ୍ର ହୋଇ ଭଜନ-କୀର୍ତ୍ତନ କଲେ ନାହିଁ, ନୀଚ ବର୍ଣ୍ଣର ଲୋକେ ସ୍ଥଳ-ବିଶେଷରେ ଉପଯୁକ୍ତ ମର୍ଯ୍ୟାଦା-ଲାଭରେ ମଧ୍ୟ ସମର୍ଥ ହେଲେ । କବି ବଳରାମ ଦାସ ଆପଣା 'ଲକ୍ଷ୍ମୀ ପୁରାଣ'ରେ ଚଣ୍ଡାଳ ଜାତିର ଟେକ ବଢ଼ାଇଛନ୍ତି ଏକ ଚମତ୍କାର କାହାଣୀ ମାଧ୍ୟମରେ ! ଚଣ୍ଡାଳୁଣୀ-ଗୃହରେ ପ୍ରବେଶ କରିଥିବା ହେତୁ ଲକ୍ଷ୍ମୀଙ୍କୁ ଜଗନ୍ନାଥ-ବଳରାମ ଶ୍ରୀମନ୍ଦିରରୁ ତଡ଼ି ଦେଇଥିବାର ପରାଭବ ପାଇଛନ୍ତି; ଫଳତଃ ଦୁହେଁ ଯାକ ଲକ୍ଷ୍ମୀଙ୍କ ହସ୍ତରେ ଭୋଜନ କରି 'ଚଣ୍ଡାଳ-ବିଟାଳ' ହୋଇଛନ୍ତି, ଏବଂ ଶେଷରେ ଲକ୍ଷ୍ମୀ ଶ୍ରୀମନ୍ଦିରର ନୂଆ ନିୟମ ବିଷୟରେ ଜଗନ୍ନାଥଙ୍କୁ ସତ୍ୟ କରାଇ ନେଇ ନୀଚ ଜାତିର ଗୌରବ ବୃଦ୍ଧି କରିଛନ୍ତି—

ଚଣ୍ଡାଳୁ ବ୍ରାହ୍ମଣ ଯାଏଁ ଖୁଆଖୋଇ ହେବେ
ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ ।
ହାଡ଼ିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।

'ଗୋପାଳଙ୍କ ଓଗାଳ ଓ ଲଉଡ଼ି ଖେଳ' ରଚନାରେ ଗୋପାଳ ଜାତିକୁ ମର୍ଯ୍ୟାଦା ଦେଇ କବି ଅଚ୍ୟୁତାନନ୍ଦ ଦାସ ଜନତା-ହୃଦୟରେ 'ଗୋପାଳଗୁରୁ' ରୂପେ ଆସନ ଲାଭ କରିଛନ୍ତି । 'କୈବର୍ତ୍ତ ଗୀତା'ରେ ମଧ୍ୟ ସେହିପରି ସେ

---

* Hinduism—K. M. Sen, Penguin Books, London (1963)—Page 31.

କୈବର୍ତ୍ତ ଜାତିକୁ ଉପଯୁକ୍ତ ସମ୍ମାନ ଦେବାପାଇଁ ଲେଖିଛନ୍ତି - ଶ୍ରୀକୃଷ୍ଣଙ୍କ କର୍ଣ୍ଣ-ମଳରୁ କୈବର୍ତ୍ତ ଦାସରାଜା ସୃଷ୍ଟି ହେଲେ । ବିଶ୍ୱକର୍ମା କୈବର୍ତ୍ତ ଜାତିର ଜାଲ-ବୁଣା ପାଇଁ କାଠି ଯୋଗାଇ ଦେଲେ, ପାର୍ବତୀ ବୁଣି ଦେଲେ ଜାଲ ଏବଂ ମହାଦେବ ସେମାନଙ୍କୁ ମାଛଧରା ଶିଖାଇ ଦେଲେ ।

ଦ୍ୱିତୀୟତଃ, ଗ୍ରନ୍ଥ ରଚନା ଓ ଶାସ୍ତ୍ର ଚର୍ଚ୍ଚାରେ ବ୍ରାହ୍ମଣଙ୍କ ସହିତ ବ୍ରାହ୍ମଣେତର ଜାତିର ଅଧିକାର ଏହି ବୈଷ୍ଣବ ଯୁଗରେ ଉଦ୍‌ଘୋଷିତ ହୋଇ ଥିଲା । କବି ବଳରାମ ଦାସ ଆପଣା 'ଭଗବଦ୍ ଗୀତା'ରେ ବାଉରୀ ତୁଣ୍ଡରେ ବ୍ରହ୍ମ ବିଦ୍ୟା ବୋଲାଇଛନ୍ତି । ଦାକ୍ଷିଣାତ୍ୟରେ ନୀଚ ବର୍ଣ୍ଣର ଆଲ୍‌ୱାର ସନ୍ଥମାନେ 'ବୈଷ୍ଣବ ଧର୍ମର ବେଦ' ରଚନା କରି ଥିବାର ବୋଲାଯାଏ । ପୁଣି ବୈଷ୍ଣବ ସନ୍ଥ କବିମାନେ ଭାରତର ବିଭିନ୍ନ ପ୍ରାଦେଶିକ ସାହିତ୍ୟ-ସୃଷ୍ଟିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ବହୁ ବର୍ଷ ତଳେ ମହାବୀର ଓ ଗୌତମ ବୁଦ୍ଧ ଯେପରି ଜନଗଣର ପାଲି-ପ୍ରାକୃତ ଭାଷାରେ ଧର୍ମ ପ୍ରଚାର କରିଥିଲେ, ବୈଷ୍ଣବ ସାଧୁସନ୍ଥମାନେ ସେହିପରି ଜନସାଧାରଣଙ୍କ ଭାଷାରେ ହିଁ ଧର୍ମ ପ୍ରଚାର କରିବାକୁ ସ୍ପୃହଣୀୟ ମନେ କଲେ । ରାମାନନ୍ଦ, କବୀର ପ୍ରମୁଖ ସନ୍ଥମାନେ 'କୂପ ଜଳ' ସଂସ୍କୃତ ପରିବର୍ତ୍ତେ 'ବହମାନ ନୀର' ପ୍ରାକୃତ ଭାଷାରେ ହିଁ ଜନତାକୁ ଉଦ୍‌ବୋଧନ ଦେଇଛନ୍ତି । ଓଡ଼ିଆ ଭାଷାରେ ଷୋଡ଼ଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ମଧ୍ୟରେ ଯେଉଁ ବିପୁଳ ଓ ବଳିଷ୍ଠ ସାହିତ୍ୟ ସୃଷ୍ଟି ହୋଇଛି, ଆପଣମାନେ ଊଣାଧିକେ ତାହା ସହିତ ପରିଚିତ ।

ତୃତୀୟତଃ; ଓଡ଼ିଶାରେ ଶ୍ରୀକୃଷ୍ଣ, ରାମଚନ୍ଦ୍ର ଓ ଜଗନ୍ନାଥଙ୍କୁ ବୈଷ୍ଣବ-ମାନେ ଆରାଧ୍ୟ ଦେବତା ରୂପେ ଗ୍ରହଣ କରି ମୂର୍ତ୍ତି ନିର୍ମାଣ ଓ ସ୍ଥାପତ୍ୟ-କଳାର ସମୃଦ୍ଧିରେ ସହାୟତା କରିଛନ୍ତି । ଇସଲାମ୍ ଧର୍ମର ପ୍ରତିକୂଳ ମନୋଭାବ ଏବଂ ମୁସଲମାନ ଶାସକମାନଙ୍କର ମୂର୍ତ୍ତି-ମନ୍ଦିର ନଷ୍ଟଭ୍ରଷ୍ଟ କରିବା ସତ୍ତ୍ୱେ, ସେ ସମୟରେ ପଥର ଓ ବିଭିନ୍ନ ଧାତୁରେ ରାଧାକୃଷ୍ଣ, ରାମସୀତା, ଲକ୍ଷ୍ମୀନାରାୟଣ, ଶ୍ରୀଜଗନ୍ନାଥ ପ୍ରଭୃତିଙ୍କର ବିଭିନ୍ନ ରୂପର ବହୁ ବିଗ୍ରହ ନିର୍ମାଣ କରା ଯାଇଛି । ଲକ୍ଷ୍ୟ କରିବାର କଥା—ଏହି ବିଗ୍ରହଗୁଡ଼ିକୁ ପ୍ରୌଢ଼ତା ବା ବାର୍ଦ୍ଧକ୍ୟ ସ୍ପର୍ଶ କରି ନାହିଁ । ସମସ୍ତ ମୂର୍ତ୍ତି କୈଶୋରରେ ସ୍ନିଗ୍ଧ-ମଧୁର, କିମ୍ବା ଯୌବନରେ

ଦୀପ୍ତ-ଚିତ୍ତାକର୍ଷକ । ପୁଣି ଶରୀର-ସଂସ୍ଥାନ ଅପେକ୍ଷା ଭଙ୍ଗ-ବିନ୍ୟାସରେ ଏହି ମୂର୍ତ୍ତି ଗୁଡ଼ିକ ବେଶ୍ ଜୀବନ୍ତ । ପୁରୀ, ଯାଜପୁର, ଭୁବନେଶ୍ୱର ପ୍ରଭୃତି ଧର୍ମପୀଠ ସମେତ ଦୀର୍ଘ ପ୍ରସ୍ଥ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ନୀଳଚକ୍ର-ଶୋଭିତ ବହୁ ବିଷ୍ଣୁମନ୍ଦିର ସେତେବେଳେ ନିର୍ମାଣ କରଯାଇଛି—ଯାହା କି ଆମର ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ କଳାର ଗୌରବମୟ ପରଂପରା ବଜାୟ ରଖି ପାରିଛି । ସେ ସମୟରେ ନିର୍ମିତ ହୋଇଥିବା କେବଳ ଜଗନ୍ନାଥ ମନ୍ଦିରର ସଂଖ୍ୟା ଥିଲା ଅର୍ଦ୍ଧ ଶତାଧିକ ।* ଏହି ବିଷ୍ଣୁମନ୍ଦିରଗୁଡ଼ିକରେ କିମ୍ବା ତତ୍‌ପୂର୍ବରୁ ନିର୍ମିତ ବିଭିନ୍ନ ମନ୍ଦିରର ଗାତ୍ରରେ ଖୋଦିତ ବହୁ କାମୋଦ୍ଦୀପକ ଚିତ୍ର ଆମର ଦୃଷ୍ଟି ଆକର୍ଷଣ କରିଥାଏ । ଏହାର ତାତ୍ପର୍ଯ୍ୟ ସମ୍ପର୍କରେ ବିଭିନ୍ନ ମତ ପ୍ରକାଶ ପାଇଥିଲେ ହେଁ ଗୋଟିଏ ବିଶେଷ କଥା ଆମକୁ ମନେ ରଖିବାକୁ ହେବ । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀଠାରୁ ଅଷ୍ଟାଦଶ ଶତାବ୍ଦୀଯାଏଁ—କେତେବେଳେ ରାଜ୍ୟଜୟ ଲାଗି, ଆଉ କେତେବେଳେ ପ୍ରତିରକ୍ଷା ଉଦ୍ଦେଶ୍ୟରେ—ଓଡ଼ିଆମାନଙ୍କୁ ଘନ ଘନ ଯୁଦ୍ଧ କରିବାକୁ ପଡ଼ିଛି ଏବଂ ତହିଁରେ ବରାବର ପ୍ରଚୁର ଲୋକକ୍ଷୟ ଘଟିଛି । ସେତେବେଳେ ପୁଣି ବିଭିନ୍ନ ପ୍ରାକୃତିକ ଦୁର୍ଯୋଗରେ ପଡ଼ି ଏବଂ ଉନ୍ନତ ଚିକିତ୍ସାପ୍ରଣାଳୀ ଅଭାବରୁ ରୋଗ-ବ୍ୟାଧି, ମହାମାରୀରେ ବହୁଲୋକ ପୋକମାଛି ପରି ମରିଯାଉଥିଲେ । ତେଣୁ ଜନବଳ ବା ଲୋକଶକ୍ତିର ଅଭିବୃଦ୍ଧି ଲାଗି ଜନସମାଜକୁ ଉତ୍ସାହିତ କରିବା ମନ୍ଦିରମାନଙ୍କରେ ଏହି କାମୋଦ୍ଦୀପକ ଚିତ୍ର ଖୋଦନର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ସଂସ୍କୃତି ଓ ସଂଯତ ଯୌନାଚାର ମଧ୍ୟରେ କୌଣସି ବିରୋଧ ନାହିଁ ଏବଂ ଧର୍ମପାଳନରେ ବିଧିସିଦ୍ଧ କାମକ୍ରୀଡ଼ା ଆଦୌ ପ୍ରତିବନ୍ଧକ ନୁହେଁ—ଏହା ଆମର ସାଂସ୍କୃତିକ ଇତିହାସରେ ପ୍ରମାଣିତ ହୋଇଛି । ବସ୍ତୁତଃ ପରିବାର-ନିୟନ୍ତ୍ରଣ ନୁହେଁ, ପରିବାର ବୃଦ୍ଧୀକରଣ ସେତେବେଳେ ସମାଜ ପକ୍ଷରେ ଲୋଡ଼ା ପଡ଼ୁଥିଲା । ଏହି ସାମାଜିକ ଆବଶ୍ୟକତା ହେତୁ ଆମର ମନ୍ଦିର-ଗାତ୍ରରେ ତଥାକଥିତ ଅଶ୍ଳୀଳ ଚିତ୍ରସମୂହର ସଂସ୍ଥାପନ ।

ଚତୁର୍ଥରେ, ସେତେବେଳେ ଶାସନର ସୂତ୍ର ଧରି ଇସଲାମ୍ ଧର୍ମ ଦେଶରେ ଯେପରି ପ୍ରଭାବ ବିସ୍ତାର କରି ଚାଲିଥିଲା, ତାହାର ଏକ ପରୋକ୍ଷ ପ୍ରତିବନ୍ଧକ

---

* ଶ୍ରୀଜଗନ୍ନାଥ ସଂସ୍କୃତି—ଓଡ଼ିଶା କଲ୍‌ଚରାଲ୍ ଫୋରମ୍, ଭୁବନେଶ୍ୱର କର୍ତ୍ତୃକ ସମ୍ପାଦିତ, ସାଥି ମହଲ, କଟକ (୧୯୭୮)—ପୃଷ୍ଠା ୨୭ ।

ଭବରେ ଠିଆ ହୋଇଥିଲା ବୈଷ୍ଣବ ଧର୍ମ । ସନାତନ ହିନ୍ଦୁ ଧର୍ମର କେତେକ ଯୁଗୋପଯୋଗୀ ସଂସ୍କାର ଆଣି ଏବଂ ସାମୂହିକ ଭଜନ-କୀର୍ତ୍ତନ ଉପରେ ଗୁରୁତ୍ୱ ଦେଇ, ଏହା ସାଧାରଣ ଜନତାଙ୍କୁ ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ, କେତେକ ପରିମାଣରେ ଧର୍ମାନ୍ତରୀକରଣର ପଥରୋଧ କରି ପାରିଥିଲା ।

କିନ୍ତୁ ପୂର୍ବରୁ ସୂଚୀତ ହୋଇଛି ଯେ—ଓଡ଼ିଶାରେ ଇସଲାମ୍ ଧର୍ମର ପ୍ରସାର ବିଶେଷ ଅଗ୍ରଗତି କରି ପାରି ନ ଥିଲା । ତାହାର କାରଣ ରାଜନୀତି ସହିତ ଇସଲାମ୍ ଧର୍ମ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିବାରୁ ତତ୍କାଳୀନ ମୁସଲମାନ ଶାସକବର୍ଗ ସାଧାରଣତଃ ଧର୍ମୀୟ ପ୍ରେରଣାରେ ଓଡ଼ିଆ ହିନ୍ଦୁଙ୍କ ଉପରେ ଅତ୍ୟାଚାର କରୁଥିଲେ—ହିନ୍ଦୁ ମନ୍ଦିର ଏବଂ ଦେବଦେବୀ ନଷ୍ଟଭ୍ରଷ୍ଟ କରି ପକାଉ ଥିଲେ । ମୁସଲମାନ ରାଜତ୍ୱରେ ଶ୍ରୀଜଗନ୍ନାଥ ମନ୍ଦିର ଓ ଠାକୁର ରାଜାଙ୍କ ଖୋର୍ଦ୍ଧାଗଡ଼ ଉପରେ ବାରମ୍ବାର ଆକ୍ରମଣ ହୋଇଥିବା ଜଣାଶୁଣା କଥା । * ଏହା ବ୍ୟତୀତ ତ୍ରୟୋଦଶ ଶତାବ୍ଦୀରେ ଗଙ୍ଗବଂଶୀ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ନିର୍ମିତ କଟକସ୍ଥ ପୁରୁଷୋତ୍ତମ ମନ୍ଦିର, କେନ୍ଦ୍ରାପଡ଼ାର ବଳଦେବଜୀଉ ମନ୍ଦିର, ଝଙ୍କଡ଼ର ଶାରଳାପୀଠ, ଏହି ଯାଜପୁରର ଜଗନ୍ନାଥ ମନ୍ଦିର ପ୍ରଭୃତି ବିଭିନ୍ନ ଦେବ-ଦେଉଳ ସେତେବେଳେ ମୁସଲମାନ ଅତ୍ୟାଚାରରୁ ରକ୍ଷା ପାଇ ନ ଥିଲା । ହିନ୍ଦୁ ମନ୍ଦିର ଭାଙ୍ଗି ତାହାରି ଉପାଦାନରେ ସେହି ସ୍ଥାନରେ ମସଜିଦ୍ ତିଆରି କରିବା ଅଧିକାଂଶ ମୁସଲମାନ ଶାସକଙ୍କର ଏକ ଗୌରବଜନକ କାର୍ଯ୍ୟ ଥିଲା । ଆପଣମାନଙ୍କର ସ୍ଥାନୀୟ ଜୁମ୍ମା ମସଜିଦ୍ ଔରଙ୍ଗଜେବଙ୍କ ରାଜତ୍ୱ କାଳରେ ସେହି ରୀତିରେ ନିର୍ମିତ ହୋଇଥିଲା । ହୀରା ବ୍ୟବସାୟ ଲାଗି ଇଂରାଜୀ ବଣିକ ଟମାସ୍ ମଟ୍ ୧୭୬୬ ମସିହାରେ କଲିକତାରୁ ସମ୍ବଲପୁର ଯିବା ବାଟରେ ଯାଜପୁରର ଦୁରବସ୍ଥା ଦେଖି ଲେଖିଛନ୍ତି—"ଯାଜପୁରର ଧ୍ୱଂସାବଶେଷ ତାହାର ପ୍ରାଚୀନ ଗୌରବ ପ୍ରଚାର କରୁଛି । ଏହି ସ୍ଥାନର ସୌନ୍ଦର୍ଯ୍ୟମୟ ପରିଚିରୁ ମହମ୍ମଦ ତକି ଖାଁଙ୍କର ରୁଚିବୋଧ ଜଣାପଡ଼େ । ରାଜପ୍ରାସାଦର ଭଗ୍ନାବଶେଷ ମଧ୍ୟରେ ରାଜପଥ ପ୍ରସାରିତ । ପ୍ରାସାଦର ସିଂହଦ୍ୱାର ଓ ମସଜିଦ୍ ଅକ୍ଷୁଣ୍ଣ ଅଛି । × × ×

---

* ଦ୍ରଷ୍ଟବ୍ୟ—ଖୁର୍ଦ୍ଧା ଇତିହାସ— ଶ୍ରୀ କେଦାରନାଥ ମହାପାତ୍ର, ଶାରଦା ପ୍ରେସ୍, ଭୁବନେଶ୍ୱର (୧୯୬୯) ।

ଏହିପରି ତୀର୍ଥକ୍ଷେତ୍ରକୁ ବିଭିନ୍ନ ଧର୍ମମତର ଦାଉ ସହିବାକୁ ପଡ଼େ ।” * ଏହିସବୁ ଦୃଷ୍ଟାନ୍ତରୁ ହିନ୍ଦୁ ଦେବଦେବୀ ଓ ମନ୍ଦିର ଉପରେ ମୁସଲମାନ ଶାସକଙ୍କ ଧ୍ୱଂସଲୀଳାର ପରିଚୟ ମିଳିଥାଏ ।

ପୁଣି 'ଠାକୁର ରାଜା' ଖୋର୍ଦ୍ଧାଗଡ଼ର ପୁରୁଷୋତ୍ତମ ଦେବ (୧୬୦୦–୧୬୨୧) ମୋଗଲ ସମ୍ରାଟ ଜାହାଙ୍ଗୀର ଓ ତାଙ୍କର ଓଡ଼ିଶା-ସ୍ଥିତ ଜାୟଗିରିଦାର୍ ହିନ୍ଦୁ ରାଜପୁତ କେଶୋ ଦାସଙ୍କୁ ଲକ୍ଷ ଲକ୍ଷ ଟଙ୍କାର ଭେଟି ସହିତ ଆପଣା କନ୍ୟା-ଭଗିନୀଙ୍କୁ ସମର୍ପି ଦେବାର ଲଜ୍ଜାକର ଦୂରବସ୍ଥା ଏବଂ ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୭୨୭—୧୭୩୬) ଯବନୀ କନ୍ୟା ବିବାହ ପୂର୍ବକ ଇସଲାମ୍ ଧର୍ମ ଗ୍ରହଣର ଦୁଃସହ ଗ୍ଲାନି ଓ ଅପମାନ ତତ୍କାଳୀନ ଜାତୀୟ ଚେତନାକୁ ଭୀଷଣ ଭାବରେ ବିପର୍ଯ୍ୟସ୍ତ କରି ଦେଇଥିଲା, ଏଥିରେ ସନ୍ଦେହ ନାହିଁ । ତଦୁପରି ରାଜସ୍ୱ ଆଦାୟ ନାମରେ ମୁସଲମାନ ଶାସନ କାଳରେ ଓଡ଼ିଶାରେ ଶୋଷଣ, ନିପୀଡ଼ନ ଓ ଲୁଣ୍ଠନ-କାର୍ଯ୍ୟ ଊଣା ନ ଥିଲା । ୧୫୯୪ ମସିହାରେ ଓଡ଼ିଶାର ରାଜସ୍ୱ ପ୍ରାୟ ସାଢ଼େ ଏକତିରିଶ ଲକ୍ଷ ଟଙ୍କା ଆଦାୟ ହୋଇଥିଲା ବେଳେ, ଶହେ ତେର ବର୍ଷ ପରେ ୧୭୦୭ ମସିହାରେ ତାହା ବୃଦ୍ଧି ପାଇ ଆଦାୟ ହୋଇଥିଲା ପ୍ରାୟ ସାଢ଼େ ପଇଁତିରିଶ ଲକ୍ଷ ଟଙ୍କା । ତାହା ଉପରେ ଥିଲା ପୁଣି ଜିଜିୟା ଓ ଅନ୍ୟାନ୍ୟ କର । ** ସମୟ ସମୟରେ କରଭାର ସହ୍ୟ କରି ନ ପାରି ପ୍ରଜାମାନେ ଘରଦ୍ୱାର ଛାଡ଼ି ବଣକୁ ପଳାଉଥିଲେ ଏବଂ ପୁରପଲ୍ଲୀ ଜନଶୂନ୍ୟ ହୋଇ ପଡ଼ୁଥିଲା । ଏହି ପରିସ୍ଥିତିରେ ଓଡ଼ିଆ ଜାତି ମୁସଲମାନ ଶାସକ-ଶ୍ରେଣୀ ଏବଂ ସେମାନଙ୍କ ଧର୍ମକୁ ସେତେବେଳେ କି ଦୃଷ୍ଟିରେ ଦେଖିଥିବ, ତାହା ହୃଦୟଙ୍ଗମ କରିବା ଆଦୌ କଷ୍ଟକର ନୁହେଁ । ପରିସ୍ଥିତିର ତାଡନାରେ ଜାତି ନିଜକୁ କ୍ରମେ ସଂକୁଚିତ କରିନେଇ ସକଳ ପ୍ରକାର ବହିର୍ଗତ ପ୍ରଭାବରୁ ନିରାପଦ ଦୂରତ୍ୱ ମଧ୍ୟରେ ରହିବା ପାଇଁ ପ୍ରାଣପଣେ ଚେଷ୍ଟା

---

* ସମ୍ବଲପୁର ଯାତ୍ରା— ଅନୁବାଦକ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ (୧୯୫୫)—ପୃଷ୍ଠା ୧୯ ।

** Proceedings of Orissa History Congress, Berhampur, Ganjam (1977)—page 69.

କରିଥିଲା । ଜାତୀୟ ଚରିତ୍ରର ଅଧୋଗତି ହେତୁ ଜନସମାଜ ନିଜ ଘରେ ଯୋଗି କବାଟ କିଳି ପଶି ରହିବାକୁ ଉଚିତ ମନେ କରୁଥିଲା ! ତେଣୁ ବଙ୍ଗ ଦେଶରେ ଯେପରି ବହୁ ସଂଖ୍ୟକ ଲୋକ ଇସଲାମ୍ ଧର୍ମ ଗ୍ରହଣ କରିଥିଲେ, ଓଡ଼ିଶାରେ ସେପରି ହୋଇ ନ ଥିଲା ।

ମୁସଲମାନ ଶାସନ ପକ୍ଷରୁ ଧର୍ମାନ୍ତରୀକରଣ ପାଇଁ ସେତେବେଳେ ବଳ ପ୍ରୟୋଗ କରାଯାଉ ଥିବାର ପ୍ରମାଣ ମିଳେ । କେବଳ ଆକବରଙ୍କୁ ବାଦ୍ ଦେଲେ, ଅନ୍ୟ ସବୁ ମୋଗଲ ସମ୍ରାଟ ଉଣାଅଧିକେ ହିନ୍ଦୁମାନଙ୍କ ଧର୍ମାନ୍ତରୀକରଣର ପକ୍ଷପାତୀ ଥିଲେ । ଏ କ୍ଷେତ୍ରରେ ସମ୍ରାଟ ଔରଙ୍ଗଜେବ (୧୬୫୮–୧୭୦୭) ବହୁ ଦୂର ଅଗ୍ରଗତି କରିଯାଇଥିବାର ଜଣାପଡ଼େ । ସମସ୍ତ ଅଣମୁସଲମାନଙ୍କୁ ମୁସଲମାନ କରିବା ଏବଂ ଭାରତବର୍ଷକୁ ଏକ ଇସଲାମୀ ରାଷ୍ଟ୍ରରେ ପରିଣତ କରିବା ତାଙ୍କର ଅନ୍ତର୍ନିହିତ କାମନା ଥିଲା । * ଓଡ଼ିଶା ଏଥିରୁ ବାଦ୍ ପଡ଼ନ୍ତା କିପରି ? ପୂର୍ବରୁ ଖୋର୍ଦ୍ଧା ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବ ଇସଲାମ୍ ଧର୍ମଗ୍ରହଣ କରିଥିବା କଥା ସୂଚିତ ହୋଇଛି; କଟକରେ ବନ୍ଦୀ ଥିବା ସମୟରେ ତାଙ୍କୁ ଜୋର୍ କରି ବା କୌଶଳ ସହକାରେ ଧର୍ମାନ୍ତରିତ କରାଯାଇ ଥିବାର ଜଣା ପଡ଼େ । ଏଠାରେ ପୁଣି ସପ୍ତଦଶ ଶତାବ୍ଦୀରେ 'ମୟୂର ଚନ୍ଦ୍ରିକା' ଗ୍ରନ୍ଥର ଲେଖକ ଭକ୍ତ ହରିଦାସଙ୍କୁ ଧର୍ମାନ୍ତରିତ କରିବା ପାଇଁ ଉଦ୍ୟମ ହୋଇଥିଲା ବୋଲି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ନିଜର 'ନାମ ଚିନ୍ତାମଣି' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି–

ହରିଦାସଙ୍କୁ ଯେ ବାଦଶା ଚଦିଲା
ହରି ନ ବୋଲ, କଲମା ଭଣରେ ।

ଏହା ସତ୍ତ୍ୱେ ଓଡ଼ିଶାରେ ସେତେବେଳେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ମୈତ୍ରୀ ଓ ସମନ୍ୱୟ ସାଧନ ପାଇଁ ଯେଉଁ ପ୍ରୟାସ କରାଯାଇଛି, ତାହା ସାଂସ୍କୃତିକ ଇତିହାସରେ ଉଲ୍ଲେଖଯୋଗ୍ୟ । ବେଦ ଓ କୋରାନ ମଧ୍ୟରେ କେତେକ ସାମଞ୍ଜସ୍ୟ ରହିଛି ଏବଂ ଇସ୍‌ଲାମ୍ ଧର୍ମର ପଞ୍ଚଶୀଳ–କଲେମା, ନମାଜ, ଜକାତ୍ ରୋଜା ଓ ହଜ୍ ସହିତ ହିନ୍ଦୁ ରୀତିନୀତିର ସାଦୃଶ୍ୟ ଅଛି, ଏହା ଅସ୍ୱୀକାର କରି

* Medieval Indian Culture—A. L. Srivastava, Shivalal Agarwala & Co, Agra (1971)-Pages 41-42.

ହେବ ନାହିଁ । * ଏହି ସାଦୃଶ୍ୟ ବା ସାମଞ୍ଜସ୍ୟ ଭିତ୍ତିରେ କେତେକ ଦୂରଦ୍ରଷ୍ଟା ବ୍ୟକ୍ତି ଏ ଦୁଇଟି ଧର୍ମ ମଧ୍ୟରେ ସମନ୍ୱୟ ସ୍ଥାପନର ଆହ୍ୱାନ ଦେଇଛନ୍ତି । ପୂର୍ବରୁ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଖ୍ୱାଜା ମୋଇନୁଦ୍ଦିନ୍ ଚିସ୍ତୀ ଓ ଅନ୍ୟାନ୍ୟ ସୁଫୀ ସନ୍ଥମାନେ ତଥା କବୀର (୧୪୪୦—୧୫୧୦), ଗୁରୁ ନାନକ (୧୪୬୯—୧୫୩୮), ଦାଦୁ (୧୫୪୪—୧୬୦୩) ପ୍ରମୁଖ ମହାତ୍ମାମାନେ ଏହି ମୈତ୍ରୀର ବାଣୀ ପ୍ରଚାର କରିଥିଲେ । କବୀର କହିଥିଲେ—ରାମ ଓ ରହିମ୍, କୃଷ୍ଣ ଓ କରିମ୍ ସେହି ଏକ ଭଗବାନଙ୍କର ବିଭିନ୍ନ ରୂପ । ଖୋଦା ଯଦି ଖାଲି ମସଜିଦ୍‌ରେ ଅଛନ୍ତି, ତାହା ହେଲେ ବାକି ଜଗତ୍‌ଟା କାହାର ? ଏବଂ ତୀର୍ଥ ସ୍ଥାନରେ ମୂର୍ତ୍ତି ମଧ୍ୟରେ ଯଦି ରାମ ଅଛନ୍ତି, ତାହା ହେଲେ ତୀର୍ଥ ବାହାରେ ଥିବା ଜଗତ୍‌କୁ ଦେଖୁଛି କିଏ ? ଗୁରୁ ନାନକ ମଧ୍ୟ ପ୍ରଚାର କଲେ—ହିନ୍ଦୁ ଓ ମୁସଲମାନ ବୋଲି କେହି ନାହାନ୍ତି; ସମସ୍ତେ ଈଶ୍ୱରଙ୍କ ସନ୍ତାନ । ଦାଦୁ ତ ଆହୁରି ଗୋଟିଏ ପାଦ ଆଗେଇ ଯାଇ କହିଲେ—ହିନ୍ଦୁ ମୁସଲମାନ ଦୁଇଟି ହାତ । ସେଇ ଦୁଇ ହାତ ଏକତ୍ର ଅଞ୍ଜଳିବଦ୍ଧ ନ ହେଲେ, ଅମୃତ ରସ ପାନ କରାଯିବ କିପରି ? ଈଶ୍ୱରଙ୍କ ରାଜ୍ୟରେ ହିନ୍ଦୁଙ୍କର ଦେଉଳ ବା ମୁସଲମାନଙ୍କର ମସଜିଦ୍ ନାହିଁ । ଦାଦୁ କହନ୍ତି— ଈଶ୍ୱର ନିଜେ ଯେଉଁଠି ଅଛନ୍ତି, ସେଠାରେ ଧର୍ମ ସମ୍ପ୍ରଦାୟର ସ୍ଥାନ ନାହିଁ ।

ସନ୍ଥ କବୀର ଓ ଗୁରୁ ନାନକ ଉଭୟ ଷୋଡ଼ଶ ଶତାବ୍ଦୀରେ ପୁରୀ ଆସିଥିବାର ଜଣାପଡ଼େ । ସେମାନଙ୍କ ମତାଦର୍ଶ ଓଡ଼ିଶାରେ କିଛି ପ୍ରଭାବ ପକାଇଥିବା ସମ୍ଭବ । ସେତେବେଳେ ଧର୍ମାନ୍ତରୀକରଣ ପ୍ରକ୍ରିୟାରେ ହିନ୍ଦୁ କେବଳ ମୁସଲମାନ ହେଉ ନ ଥିଲେ, ମୁସଲମାନ ମଧ୍ୟ ହିନ୍ଦୁ ହେଉଥିବାର ଦୃଷ୍ଟାନ୍ତ ରହିଛି । ଷୋଡ଼ଶ ଶତାବ୍ଦୀ ପ୍ରାରମ୍ଭରେ ବଙ୍ଗ ସୁଲତାନ ହୁସେନ୍ ଶାହାଙ୍କ ଅମଳରେ ଇସଲାମ୍ ଧର୍ମ ତ୍ୟାଗ କରି ବୈଷ୍ଣବ ଧର୍ମ ଗ୍ରହଣ କରିଥିବା ପ୍ରସିଦ୍ଧ ବ୍ୟକ୍ତି ହେଉଛନ୍ତି—ଯବନ ହରିଦାସ । କାଜୀ ଏଥିରେ ଆପତ୍ତି କରିବାରୁ ହୁସେନ୍ ଶାହ ହରିଦାସଙ୍କୁ ଧରିନେଇ ଇସଲାମ୍ ଧର୍ମ ତ୍ୟାଗ କରିବାର କାରଣ ପଚାରି ଥିଲେ । ତହୁଁ ହରିଦାସ—

---

* ବେଦ ଓ କୋରାନେର୍ ସାଦୃଶ୍ୟ—ଶ୍ରୀ ରବୀନ୍ଦ୍ର କୁମାର ସିଦ୍ଧାନ୍ତ ଶାସ୍ତ୍ରୀ, ସଂସ୍କୃତ ପୁସ୍ତକ ଭଣ୍ଡାର, କଲିକତା (୧୯୬୫) ।

ବଳିତେ ଲାଗିଲ ତାରେ ମଧୁର୍ ଉତ୍ତର
ଶୁନ ବାପ ସବାରଇ ଏକଇ ଈଶ୍ୱର ।।
ନାମ୍ ମାତ୍ର ଭେଦ୍ କରେ ହିନ୍ଦୁରେ ଯବନେ
ପରମାର୍ଥେ ଏକ୍ କହେ କୋରାନେ ପୁରାଣେ ।।
—ଚୈତନ୍ୟ ଭାଗବତ : ବୃନ୍ଦାବନ ଦାସ

ଯବନ ହରିଦାସ ଶେଷ ଜୀବନ ପୁରୀରେ କଟାଇ ଥିବାରୁ, ତାଙ୍କର ନାଟକୀୟ ଜୀବନ ମଧ୍ୟ ଏଠାରେ ବହୁ ବ୍ୟକ୍ତିଙ୍କୁ ପ୍ରଭାବିତ କରିଥିବ । ସେହି ଷୋଡ଼ଶ ଶତାବ୍ଦୀରେ ରସିକାନନ୍ଦ ଦେବ ଗୋସ୍ୱାମୀ, ମୟୁରଭଞ୍ଜ ମହାରାଜା ବୈଦ୍ୟନାଥ ଭଞ୍ଜଙ୍କ ସାହାଯ୍ୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟାଇଥିଲେ । ତାଙ୍କ ଗୁଣରେ ଓଡ଼ିଶାର ତତ୍କାଳୀନ ସୁବେଦାର୍ ମିର୍ଜା ଅହମ୍ମଦ୍ ବେଗ୍ ଆକୃଷ୍ଟ ହୋଇ ହିନ୍ଦୁମାନଙ୍କ ପ୍ରତି ସହନଶୀଳ ମନୋଭାବ ପ୍ରକାଶ କରିଥିଲେ, ଏବଂ ତାଙ୍କରି ପ୍ରଭାବରେ ବାଣପୁରର ବହୁ ମୁସଲମାନ ବୈଷ୍ଣବ ଧର୍ମ ଗ୍ରହଣ କରି ନେଇଥିଲେ ।* ସପ୍ତଦଶ ଶତାବ୍ଦୀର ଭକ୍ତକବି ସାଲବେଗ ତ ଆମ ନିକଟରେ ବେଶ୍ ଜଣାଶୁଣା ! ସେ ମୁକ୍ତକଣ୍ଠରେ ସେତେବେଳେ ଗାଇଥିଲେ—

ପିତା ମୋ ମୋଗଲ ବେଟା ମାତା ମୋ ବ୍ରାହ୍ମଣୀ
ଏ କୁଳେ ଜନ୍ମିଲି ହିନ୍ଦୁ ନ ଖାଏ ମୋ ପାଣି ।
କହେ ସାଲବେଗ ହୀନ ଜାତିରେ ଯବନ
ଶ୍ରୀରଙ୍ଗାଚରଣ ବିନୁ ନ ଜାଣଇ ଆନ ।

ଅଷ୍ଟାଦଶ ଶତାବ୍ଦୀରେ ନିର୍ମିତ କଟକର କଦମ୍ ରସୁଲ୍ ଭଳି ଓଡ଼ିଶାର ବହୁ ଦରଘା, ପୀର୍ ଆସ୍ଥାନ ହିନ୍ଦୁ-ମୁସଲମାନ ଉଭୟ ସଂପ୍ରଦାୟର ପୂଜ୍ୟ, ଆରାଧ୍ୟ ଥିଲା ଏବଂ ବର୍ତ୍ତମାନ ମଧ୍ୟ ସେହିପରି ଅଛି । ସେତେବେଳେ ଓଡ଼ିଶା ଓ ବଙ୍ଗ ଦେଶରେ ସତ୍ୟପୀର ପୂଜାର ପ୍ରଚଳନ ମଧ୍ୟ ହିନ୍ଦୁ-ମୁସଲମାନ ମୈତ୍ରୀପ୍ରୀତିର ଏକ ବଡ଼ ନିଦର୍ଶନ । ସତ୍ୟପୀର ବା ସତ୍ୟନାରାୟଣ ଏବେ ମଧ୍ୟ ଆମ ସମାଜରେ

---

* ଓଡ଼ିଶା ଇତିହାସ— ଡକ୍ଟର୍ ହରେକୃଷ୍ଣ ମହତାବ, ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ (୧୯୪୮)—ପୃଷ୍ଠା ୧୦୯, ୧୯୯-୨୦୦, ୨୩୨ ।

ଜନପ୍ରିୟତା ହରାଇ ନାହାନ୍ତି । ଚଳିତ ଶତାବ୍ଦୀ ଆରମ୍ଭରେ ଗଣକବି ବୈଷ୍ଣବ ପାଣି ତାଙ୍କୁ ଏଇଭଳି ସ୍ତୁତି କରିଛନ୍ତି —

ଭଜ ଭଜରେ ମନ ସତ୍ୟ ନାରାୟଣ
ହେଜ ହେଜ ସେହି ବ୍ରହ୍ମ ପରାୟଣ ।।

କଳି ଯୁଗେ ପୀର ରୂପ ହରିବାକୁ ପାପତାପ
କରନ୍ତି କାମନା ପୂର୍ଣ୍ଣ ରଖି ପଣ ।।
ଖାଇବା ପାଇଁ ଶିରିଣୀ ଜାରି କରନ୍ତି କରଣି
ଧରଣୀରେ ନ ରଖନ୍ତି ଦୁଷ୍ଟ ଟାଣ ।।
ସାଜିଣ ଫକୀର ବେଶ ଦେଖାନ୍ତି ରଙ୍ଗରହସ୍ୟ
ଭୟ ମାତ୍ରକେ କରନ୍ତି ପରିତ୍ରାଣ ।।
ପୁଣି ହିନ୍ଦୁ ମୁସଲମାନ ତାହାଙ୍କ ନେତ୍ରେ ସମାନ
ଆସ୍ଥାନ୍ ଦେବତା ସ୍ନେହଧନେ କିଣ ।।

—ସର୍ବଦେବଦେବୀ ଜଣାଣମାଳା, ଅରୁଣୋଦୟ ପ୍ରେସ୍, କଟକ (୧୯୨୯) ।

ହିନ୍ଦୁ ମୁସଲମାନ ଦୁଇ ସଂପ୍ରଦାୟର ଲୋକେ ଦୀର୍ଘକାଳ ଏକା ସାଙ୍ଗରେ ରହିବା ଫଳରେ ଭାରତୀୟ ସଂସ୍କୃତି ନାନା ଦିଗରେ ସମୃଦ୍ଧତର ହୋଇଥିଲେ ମଧ୍ୟ, ଆମକୁ ଅତି ଦୁଃଖର ସହିତ ସ୍ୱୀକାର କରିବାକୁ ହେବ ଯେ—ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଏହି ମୈତ୍ରୀ ଓ ସମନ୍ୱୟ ସ୍ଥାପନର ଉଦ୍ୟମ ଓଡ଼ିଶା ତଥା ଭାରତରେ ବିଶେଷ ଫଳବତୀ ହୋଇପାରି ନାହିଁ । ଏ ବିଷୟରେ ବିଭିନ୍ନ ଐତିହାସିକ ପ୍ରାୟ ଏକ ପ୍ରକାର ମତ ପ୍ରକାଶ କରିଛନ୍ତି ।* ଏହାର କାରଣ ଏହି ଉଭୟ ଧର୍ମ ଓ ଧର୍ମାବଲମ୍ବୀଙ୍କ ମଧ୍ୟରେ ହିଁ ନିହିତ ଅଛି ।

---

* ଦ୍ରଷ୍ଟବ୍ୟ-- Medieval Indian Culture— A. L. Srivastava, S. L. Agarwala & Co, Agra (1971) —Pages 232-34 and British Paramountcy & Indian Renaissance—Part II, General Editor— Dr. R. C. Majumdar, Bharatiya Vidyabhavan, Bombay (1965) —Pages 8-10.

ଇସ୍‌ଲାମ୍ ଧର୍ମ ଭରି ଦିଗନ୍ତ ଦୃଢ଼ ପାଚେରିଘେର । କାଫେର୍‌ମାନଙ୍କ ପ୍ରତି ଏହା ଅତ୍ୟନ୍ତ କଠୋର ଓ ଅନମନୀୟ । ତେଣୁ ଅନ୍ୟ କୌଣସି ଧର୍ମ ନିଜ ଆଙ୍ଗରେ ଏହାକୁ ମିଶାଇ ନେବା କଷ୍ଟକର । ପୁଣି ବିଜେତାର ଅହଂକାର ଘେନି ଇସଲାମୀ ସଂପ୍ରଦାୟ ଉପବିଷ୍ଟ ଶାସକ ଦୃଷ୍ଟିରେ ବର୍ବର ହିନ୍ଦୁମାନଙ୍କୁ ଦେଖିବାରେ ଲାଗିଲା । ଅନ୍ୟ ପକ୍ଷରେ ହିନ୍ଦୁମାନେ ଜୀବନ-ଶକ୍ତି ହରାଇ ନୈତିକ ତଥା ବୈଷୟିକ ଅଧୋଗତି ମଧ୍ୟରେ ସଙ୍କୁଚିତ ହୋଇ ରହିଥିବାରୁ ଅତୀତର ଉଦାର ସମନ୍ୱୟବାଦୀ ଦୃଷ୍ଟିକୋଣ ବିଶେଷ ବଜାୟ ରଖି ପାରିଲେ ନାହିଁ । ଏପରି କି, ପଶ୍ଚିମ ଭାରତରେ ମରହଟ୍ଟା ଶକ୍ତିର ଅଭ୍ୟୁଦୟ ପରେ ଏବଂ ୧୭୫୧ ମସିହାରୁ ମରାଠାମାନଙ୍କର ପ୍ରାୟ ପଚାଶ ବର୍ଷବ୍ୟାପୀ ଓଡ଼ିଶା-ଶାସନ କାଳରେ ମଧ୍ୟ ହିନ୍ଦୁମାନଙ୍କ ଅବସ୍ଥାର ଉନ୍ନତି ହେଲା ନାହିଁ । ତେଣୁ ହିନ୍ଦୁ-ମୁସଲମାନ ଦୁଇ ସଂପ୍ରଦାୟ ମଧ୍ୟରେ ବିଭେଦର ଏକ ଅଶୋଭନୀୟ ପ୍ରାଚୀର ରହିଛି । ଊନ-ବିଂଶ ଶତାବ୍ଦୀରେ ବ୍ରିଟିଶ୍ ସରକାର ଏହି ବିଭେଦରୁ ଖୁବ୍ ଫାଇଦା ଉଠାଇଛନ୍ତି । କିନ୍ତୁ ଇଂରେଜମାନେ ଏ ଦେଶରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଭେଦର ବିଷମଞ୍ଜି ବୁଣିଛନ୍ତି ବୋଲି ଅନେକଙ୍କର ଯେଉଁ ଧାରଣା, ବହୁ ଐତିହାସିକ ତାହା ଭ୍ରମାତ୍ମକ ବୋଲି କହିଛନ୍ତି । ଇଂରେଜମାନଙ୍କ ଭାରତ-ଅଧିକାର ପୂର୍ବରୁ ଏହି ଭେଦଭାବ ଦେଖା ଦେଇଥିଲା ଏବଂ ଏକାଦଶ ଶତାବ୍ଦୀଠାରୁ କ୍ରମଶଃ ବୃଦ୍ଧିଲାଭ କରି ବିଂଶ ଶତାବ୍ଦୀ ଆରମ୍ଭବେଳକୁ ଉତ୍କଟ ରୂପ ଧାରଣ କରିଥିଲା । କେବଳ ଊନବିଂଶ ଶତାବ୍ଦୀ ମଧ୍ୟରେ ବମ୍ବେ, କଲିକତା ପ୍ରଭୃତି ବିଭିନ୍ନ ଅଞ୍ଚଳରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ପାଞ୍ଚଥର ବଡ଼ ଧରଣର ଦଙ୍ଗାଗୋଳ ସଂଘଟିତ ହୋଇଥିବାର ଜଣାପଡ଼େ ।*

୧୫୬୮ରୁ ୧୮୬୮ ମସିହା—ଏହି ତିନି ଶହ ବର୍ଷ ଓଡ଼ିଶା ଇତିହାସର ଏକ 'ଅନ୍ଧକାର ଯୁଗ' ବୋଲି ପୂର୍ବରୁ ସୂଚିତ ହୋଇଛି । ଗୋଟିଏ ଜାତି ହିସାବରେ ଓଡ଼ିଆମାନଙ୍କ ତତ୍‌କାଳୀନ ଦୁର୍ଗତିର ଯେଉଁ ସାଧାରଣ ଚିତ୍ର ବିଭିନ୍ନ ସୂତ୍ରରୁ ମିଳୁଛି, ତାହା ଆମ୍ଭମାନଙ୍କ ପକ୍ଷରେ ଆଦୌ ପ୍ରୀତିପ୍ରଦ ନୁହେଁ । ଇଂରେଜ

* **British Paramountcy & Indian Renaissance—Pages 325-334.**

ବଣିକଟମାସ୍ ମଟ୍ ୧୭୬୬ ମସିହାରେ ଓଡ଼ିଆମାନଙ୍କ ସମ୍ପର୍କରେ ଲେଖିଛନ୍ତି— "ଏ ଦେଶର ଜନମଣ୍ଡଳୀ ସ୍ୱଭାବତଃ ଉଦାସୀନଭାବାପନ୍ନ ଥିବାରୁ ଅତ୍ୟାଚାର ଅନୁଭବ କରିବାର ଶକ୍ତି-ରହିତ । ଏମାନଙ୍କ ହୃଦୟରେ ଭୀରୁତାସୂଚକ ବିଶ୍ୱାସଘାତକତା ପୂର୍ଣ୍ଣ ଥିବାରୁ ଏମାନେ ତଦ୍ୱାରା ପ୍ରଣୋଦିତ ହୋଇ ନିଜର ପ୍ରତିବେଶୀଙ୍କୁ ମଧ୍ୟ ଅବିଶ୍ୱାସ କରନ୍ତି ଏବଂ ସେମାନଙ୍କୁ ଯେ ରକ୍ଷା କରି ପାରନ୍ତା, ତାହାଠାରେ ବିରୋଧ ଘଟାନ୍ତି ।" * ସେହି ସମୟରେ ସମାଜ-ସଚେତନ କବି ବ୍ରଜନାଥ ବଡ଼ଜେନା ଉତ୍କଳୀୟ ଜାତୀୟ ଜୀବନର ବାସ୍ତବ ଚିତ୍ର ଅଙ୍କନ କରିଛନ୍ତି । ଧନୀ ରଜାରଜୁଡ଼ାଙ୍କ ରୀତିନୀତି ବିଷୟରେ ସେ ଲେଖିଛନ୍ତି—

କେଉଁ ରଜା ନ ଥାଇ ସୁନ୍ଦର ପଣ
ଯେ ଗୁଣ ଥିଲେ ହୋଇଥାନ୍ତା ଘଟଣ ହେ ॥
କେ ଶୂର ହେଲେ ହେଁ ନୁହନ୍ତି ସୁନ୍ଦର
ସୁନ୍ଦର ହେଲେ ବୁଝିବାର ଅଧୀର ହେ ॥

× × ×

କେ ଧନବନ୍ତ ନୁହଁ ଭେଟ ତାଙ୍କର
କେ ନାରୀବଶେ ଥାନ୍ତି ଭିତର ପୁର ହେ ॥
କହନ୍ତି ଯାହା କେ' ତା କରନ୍ତି ନାହିଁ
କେ ସତ କହେ ଗୁଣେ ସତ ନ ପାଇ ହେ ॥
କେ ପୁଣ ଘେନିଲେ ତା ପାପ ପ୍ରବନ୍ଧ
ସବୁ କଥାକୁ ଧନ କେ କରେ ମୂଳ ହେ ॥
ଅମଳ ବଶ କେହୁ ନାରୀରେ ବଶ
ଆହାରେ ବଶ କେହୁ ନିଦ୍ରା ଆବେଶ ହେ ॥
କେହୁ ପାତ୍ରରେ ବଶ କେ ଲୋକବଶ
କେ ଖେଳ କେହୁ ନାଟରଙ୍ଗରେ ବଶ ହେ ॥

—ସମର ତରଙ୍ଗ : ସପ୍ତମ ଛାନ୍ଦ ।

* ସମ୍ବଲପୁର ଯାତ୍ରା – ଅନୁବାଦକ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ (୧୯୫୫)—ପୃଷ୍ଠା ୪୭

ଜନସାଧାରଣଙ୍କ ମତିଗତି ସମ୍ପର୍କରେ କବି ବଡ଼ଜେନା ଲେଖିଛନ୍ତି—

ଶିବ କେ ଭଜନ୍ତି ବିଷ୍ଣୁକୁ ନ ଚିହ୍ନି ବିଗ୍ଭରନ୍ତି ଭେଦ
ଶାକ୍ତ ହୋଇ କେହି ସେହି ପୁଣି ନୋହି ତାମସେ ଆନନ୍ଦ ॥

× × ×

ଶ୍ରୀବାସୁଦେବ କେ ନ ଜାଣନ୍ତି ଥୋକେ ବୋଲନ୍ତି ବୈଷ୍ଣବ
ଶତ ଶତ ଛାପ ମଣ୍ଡି ଅଙ୍ଗେ ପାପ-କର୍ମେ ବଡ଼ ଖବ ॥
ଶିବ ଦରଶନେ ଗର୍ବ ଧରି ମନେ ବୋଇନ୍ତି ଏ ବାଣୀ
ଶିର ଆମ୍ଭେମାନେ ଶିବଙ୍କୁ କେସନେ ନୁଆଁଇବୁ ପୁଣି ॥

× × ×

ଶୂଦ୍ର ଜନ୍ମ ହୋଇ ମୂର୍ଖ କେ ବୋଲଇ ବେଦରୁ କି ଫଳ
ଶୂନ୍ୟକୁ ଅନାଇ ବ୍ୟର୍ଥେ ବୋଲେ ଏହି ଦେଖ ବ୍ରହ୍ମ ଠୁଳ ॥
ଶରୀରକୁ ସୁଖ ଦେବା କଥାଯାକ ଲୋଡ଼ଇ ଅନିଷେ
ଶିଶ୍ନୋଦର-ବଶେ ଜିତେନ୍ଦ୍ରିୟ ମୁଁ ସେ ନିଗଦାରୀ ଲଷେ ॥

— ଶ୍ୟାମ ରସୋତ୍ସବ : ଏକାଦଶ ଛାନ୍ଦ

ଆମର ଗ୍ଲାନିକାରକ ଜାତୀୟ ଜୀବନ ସମ୍ପର୍କରେ ଦେଶୀ ବିଦେଶୀ ବ୍ୟକ୍ତିମାନଙ୍କର ଏହି ଅଭିମତଗୁଡ଼ିକୁ ଅସ୍ୱୀକାର କରି ହେବ ନାହିଁ । ସକଳ ପୁରୁଷକାର ହରାଇ ଓଡ଼ିଆ ଜନ-ଜୀବନ ସେତେବେଳେ ଅର୍ଦ୍ଧମୃତ ଅବସ୍ଥାରେ ପଡ଼ି ରହିଥିଲା । ଅନ୍ଧବିଶ୍ୱାସ ଓ କୁସଂସ୍କାରରେ ଆକଣ୍ଠ ନିମଜ୍ଜମାନ୍ ହୋଇ ଜାତି ଯେପରି କୂପ ମଣ୍ଡୁକରେ ପରିଣତ ହୋଇ ଯାଇଥିଲା ! ପୃଥିବୀରେ ସେତେବେଳକୁ କେତେ କଣ ପରିବର୍ତ୍ତନ ଘଟିଗଲାଣି—କଲମ୍ବସ୍‌ଙ୍କ ଆମେରିକା ଆବିଷ୍କାର ପରେ ନୂତନ ଜଗତର ସନ୍ଧାନ ମିଳିଲାଣି—ପାଶ୍ଚାତ୍ୟ ଭୂଖଣ୍ଡରେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଜୟଯାତ୍ରା ଆରମ୍ଭ ହେଲାଣି—ଫରାସୀ ବିପ୍ଲବ ଓ ଇଂଲଣ୍ଡର ଶିଳ୍ପ ବିପ୍ଳବ ଘଟି ରାଷ୍ଟ୍ରନୀତି ତଥା ଉତ୍ପାଦନ-ଶକ୍ତିର ଦିଗ୍‌ବଳୟ ସମ୍ପ୍ରସାରିତ ହୋଇଗଲାଣି—ଇଉରୋପୀୟ ରେନେସାଁସ୍ ଓ ରିଫର୍ମେସନ୍‌ର ସୁଫଳ ମାନବ ସଭ୍ୟତା ଲାଭ କରି ସାରିଲାଣି । କିନ୍ତୁ ଏହି ସବୁ ଆନ୍ତର୍ଜାତିକ ବ୍ୟାପାର ସଙ୍ଗେ ହତଭାଗ୍ୟ ଓଡ଼ିଆ ଜାତି ପରିଚିତ ହେବା ଦୂରେ ଥାଉ, ସେତେବେଳେ ଆପଣା ରାଜ୍ୟ ମଧ୍ୟରେ ଘଟି ଯାଉଥିବା ଯୁଗାନ୍ତକାରୀ ଘଟଣାବଳୀ ସମ୍ପର୍କରେ

ସେ ପ୍ରାୟ ଅଜ୍ଞ ଓ ଉଦାସୀନ ହୋଇ ରହିଥିଲ । ୧୬୩୩ ମସିହାରେ ଇଂରେଜମାନେ ଆସି ଉତ୍ତର ଓଡ଼ିଶାର ସମୁଦ୍ର ଉପକୂଳରେ ବାଣିଜ୍ୟ-ବ୍ୟବସାୟ ଆରମ୍ଭ କଲେ—ପିପିଲି ଓ ବାଲେଶ୍ୱର ବନ୍ଦରରେ ଦାସ-ବ୍ୟବସାୟ ବା ମଣିଷ କିଣାବିକାର କାରବାର ଚାଲିଲା, କିମ୍ବା ୧୭୬୬ ମସିହାରେ ଦକ୍ଷିଣ ଓଡ଼ିଶାକୁ ଇଂରେଜମାନେ କବଳିତ କଲେ; ଏହି ସବୁ ଗୁରୁତ୍ୱପୂର୍ଣ୍ଣ ଘଟଣା ପ୍ରତି ଓଡ଼ିଆ-ମାନେ ସେତେବେଳେ ନିଜର ପ୍ରତିକ୍ରିୟା ତ ପ୍ରକାଶ କଲେ ନାହିଁ, ବରଂ ଏ ବିଷୟରେ ଅତି ଶୋଚନୀୟ ଭାବରେ ନିର୍ଲିପ୍ତ ରହିଲେ । ମୁସଲମାନ ରାଜତ୍ୱରେ ପ୍ରାୟ ପାଞ୍ଚ ଥର ଶ୍ରୀମନ୍ଦିର ଉପରେ ଆକ୍ରମଣ କରାଗଲା ଏବଂ ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥଙ୍କୁ ପୁରୀ ବାହାରେ ଗୋପନରେ ଲୁଗାଇ ରଖାଯିବାରୁ ମାସ ମାସ କାଳ ଶ୍ରୀମନ୍ଦିରର ଦୈନିକ ନୀତି ଓ ଯାତ୍ରା-ପର୍ବ ବନ୍ଦ ହୋଇଗଲା । କିଂକର୍ତ୍ତବ୍ୟ-ବିମୂଢ଼ ଓଡ଼ିଆ ଜାତି ନୀରବରେ ତାହା ସହ୍ୟ କଲା । ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗରେ ପ୍ରାୟ ପଚାଶ ବର୍ଷ କାଳ ଓଡ଼ିଶାରେ ବର୍ଗୀମାନଙ୍କର ଲୁଣ୍ଠନ, ଅତ୍ୟାଚାର ପ୍ରବଳଭାବେ ଚାଲିଲା । ହୀନବୀର୍ଯ୍ୟ ଓଡ଼ିଆମାନେ ତାହାର ମୁକାବିଲା କରିବା ପାଇଁ ଅସମର୍ଥ ହେଲେ । ସେମାନଙ୍କର ଧର୍ମୀୟ ଚେତନା କିମ୍ବା 'ରାଷ୍ଟ୍ରଦେବତା' ଶ୍ରୀଜଗନ୍ନାଥ, ଜାତିକୁ ଏହି ଦୁଃଖ ଦୁର୍ବିପାକରୁ ରକ୍ଷା କରି ପାରିଲେ ନାହିଁ । ଧର୍ମ ଓ ଈଶ୍ୱର-ବିଶ୍ୱାସ ଯେପରି ବିଶୃଙ୍ଖଳ ଆରବ ଜାତିକୁ ସଙ୍ଘ୍ୟ ଓ ସଂଗଠିତ କରି ପୃଥିବୀର ବିଭିନ୍ନ ଅଞ୍ଚଳରେ ଇସଲାମ୍‌ର ଚନ୍ଦ୍ର-ଚିହ୍ନିତ ବୈଜୟନ୍ତୀ ପତାକା ଉଡ୍ଡୀୟମାନ୍ କରାଇଲା, କିମ୍ବା ମରାଠା ଓ ଶିଖ୍ ଶକ୍ତିକୁ ଯେପରି ଭାରତ-ଭୂମିରେ ଦୃଢ଼ ଭିତ୍ତିରେ ଠିଆ କରାଇ ପାରିଲା, କାହିଁ ? – ଆମର ଧର୍ମ ଓ ଈଶ୍ୱର-ବିଶ୍ୱାସ ତ ସେପରି କରି ପାରିଲା ନାହିଁ ! * ସୁଧୀବୃନ୍ଦ, ଏହି ହତଭାଗ୍ୟ ଜାତି ପ୍ରତି ଇତିହାସର ଏହା ଏକ ବିଚିତ୍ର ପରିହାସ ନୁହେଁ କି ?

ଊନବିଂଶ ଶତାବ୍ଦୀ ପ୍ରଥମ ଭାଗରେ ଓଡ଼ିଶାରେ ବ୍ରିଟିଶ୍ ରାଜତ୍ୱ ପ୍ରତିଷ୍ଠିତ ହେବା ପରେ ପରେ ଏହି ଐତିହାସିକ ଭୂଖଣ୍ଡରେ ଖ୍ରୀଷ୍ଟଧର୍ମର ପ୍ରସାର ପାଇଁ ସୁବିଧା ମିଳିଲା । ଇସଲାମ୍ ପରି ଖ୍ରୀଷ୍ଟଧର୍ମ ବହିରାଗତ ଏକେଶ୍ୱରବାଦୀ ଭକ୍ତି ଧର୍ମ

---

* ଓଡ଼ିଆ ସମାଜ ଓ ସାହିତ୍ୟ—ଡକ୍ଟର ମାୟାଧର ମାନସିଂହ, ଭାରତୀ ବିହାର, କଟକ (୧୯୫୧)—ପୃଷ୍ଠା : ୧୩୬-୪୩

ଏବଂ ପୌତ୍ତଳିକତା ତଥା ବହୁ ଦେବଦେବୀ ପୂଜାର ବିରୋଧୀ । ଏହା ମଧ୍ୟ ବିଜେତା ଶାସକଙ୍କର ଧର୍ମ ଥିଲା । ୧୮୧୩ ମସିହାରେ ଖ୍ରୀଷ୍ଟିୟାନ୍ ମିସନାରୀମାନଙ୍କୁ ବ୍ରିଟିଶ-ଅଧିକୃତ ଭାରତରେ ଧର୍ମ-ପ୍ରଚାର ପାଇଁ ଚାର୍ଟାର୍ ଆକ୍ଟ ଦ୍ୱାରା ଅନୁମତି ପ୍ରଦାନ କରାଗଲା ପରେ ଇଂଲଣ୍ଡ, ଆମେରିକା ପ୍ରଭୃତି ଦେଶରୁ ବହୁ ମିସନାରୀ ଭାରତକୁ ଆସିବାରେ ଲାଗିଲେ । ପୂର୍ବରୁ ବାଲେଶ୍ୱର ଓ ଗଞ୍ଜାମ ଅଞ୍ଚଳରେ ଅତ୍ୟନ୍ତ ଅନିୟମିତ ଭାବରେ ଯୀଶୁଖ୍ରୀଷ୍ଟଙ୍କ ବାର୍ତ୍ତା ପ୍ରଚାରିତ ହୋଇଥିଲେ ହେଁ, ୧୮୨୨ ମସିହାଠାରୁ ଓଡ଼ିଶାରେ ଏହି ପ୍ରଚାର କାର୍ଯ୍ୟ ବିଧିବଦ୍ଧ ଓ ଧାରାବାହିକ ଭାବରେ ଚାଲିଲା । ୧୮୨୨ ମସାହା ଫେବୃୟାରୀ ମାସ ୩ ତାରିଖରେ ଉଇଲିୟମ୍ ବ୍ୟାଂପଟନ୍ ଓ ଜେମସ ପେଗସ ନାମକ ଦୁଇ ଜଣ ମିସନାରୀ 'ଶୟତାନର 'ଏହି ସୁଦୃଢ଼ ଦୁର୍ଗରେ' 'ଯୀଶୁଙ୍କ ପ୍ରେମର ବାଣୀ' ପ୍ରଚାର ପାଇଁ ଜଳପଥରେ ଆସି କଟକ ଜିଲ୍ଲା ଯଟାମୁଣ୍ଡାଇଠାରେ ଉପସ୍ଥିତ ହେଲେ । ସେଠାରୁ ସେମାନେ କଟକ ଆସି ଧର୍ମପ୍ରଚାରର ଯୋଜନାବଦ୍ଧ ପରିକଳ୍ପନା ଓ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ତତ୍‌ପୂର୍ବରୁ ବଙ୍ଗଳା ଶ୍ରୀରାମପୁରରୁ ଉଇଲିୟମ୍ କେରିଙ୍କ ଯତ୍ନରେ ବାଇବେଲର ଓଡ଼ିଆ ତର୍ଜମା ଏବଂ ଓଡ଼ିଆ ଭାଷାରେ କେତେକ ଧର୍ମୀୟ ପ୍ରଚାର-ପତ୍ର ମୁଦ୍ରିତାକାରରେ ପ୍ରକାଶ ପାଇଥିଲା । ୧୮୨୩ ମସୀହାରେ ପୁରୀରେ ମିସନାରୀମାନଙ୍କ କାର୍ଯ୍ୟକଳାପ ଆରମ୍ଭ ହେଲା ଏବଂ ସେହି ବର୍ଷ ଚାର୍ଲସ୍ ଲେସି ସସ୍ତ୍ରୀକ କଟକରେ ଆସି ପହଞ୍ଚିଲେ । ୧୮୨୫ ମସୀହାରେ ସସ୍ତ୍ରୀକ ଆମସ୍ ସଟନ୍ ମଧ୍ୟ କଟକ ଆସିଲେ, ଏବଂ ପ୍ରାକୃତିକ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କ୍ରମଶଃ ମିସନାରୀ କାର୍ଯ୍ୟକଳାପ ବୃଦ୍ଧି ପାଇବାରେ ଲାଗିଲା । *

କିନ୍ତୁ ଏଠାରେ ଏହା ଉଲ୍ଲେଖନୀୟ ଯେ—ଓଡ଼ିଶାରେ ସେତେବେଳେ ଜଣେ ଅଣଖ୍ରୀଷ୍ଟିୟାନ୍ ଖ୍ରୀଷ୍ଟଧର୍ମ ପ୍ରଚାରର ନେତୃତ୍ୱ ନେଇଥିଲେ । ସେ ହେଉଛନ୍ତି —କଟକ ଚଉଦ୍ୱାର ନିକଟସ୍ଥ କୁଜିବର ଆଶ୍ରମର ସାଧୁ ସୁନ୍ଦର ଦାସ ବା ସୁନ୍ଦର ବାବାଜୀ (୧୭୭୪ ?—୧୮୩୮) । ସେ ଥିଲେ ଅତି ନିର୍ଭୀକ, କୁସଂସ୍କାରମୁକ୍ତ ଓ ଦୂରଦ୍ରଷ୍ଟା । ମୂର୍ତ୍ତିପୂଜା ଓ ଜାତିଭେଦର ସେ ଥିଲେ ବିରୋଧୀ ।

---

* ଖ୍ରୀଷ୍ଟୀୟ ମଣ୍ଡଳୀର ଇତିହାସ—ଶ୍ରୀ ପ୍ରଫୁଲ୍ଲ କୁମାର ପାତ୍ର, ଓଡ଼ିଶା ମିସନ୍ ପ୍ରେସ୍, କଟକ (୧୯୪୩)—ପୃଷ୍ଠା : ୧୧–୩୬ ।

ଧର୍ମ, ଶିକ୍ଷା, ସମାଜ, ରାଷ୍ଟ୍ରନୀତି ପ୍ରଭୃତି ବିଷୟରେ ନିଜର ବିପ୍ଳବସିଦ୍ଧ ଅଭିମତ-ମାନ ସେ ଏକ ହାତଲେଖା ପତ୍ରିକା 'କୁଜିବର ପତ୍ର' ଜରିଆରେ ପ୍ରକାଶ କରୁଥିଲେ । ବାଇବେଲ୍ ତଥା ଖ୍ରୀଷ୍ଟଧର୍ମର ଅନ୍ୟାନ୍ୟ ପ୍ରଚାରପତ୍ର ପଢ଼ି ସେ ଏହି ନୂତନ ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ, ଏବଂ ମିସନାରୀମାନଙ୍କୁ ଆପଣା ଆଶ୍ରମକୁ ଡକାଇ ଧର୍ମାଲୋଚନା କରିଥିଲେ । ସୁନ୍ଦର ବାବାଜୀ ନିଜେ ଖ୍ରୀଷ୍ଟଧର୍ମ ଗ୍ରହଣ କରି ନ ଥିଲେ ମଧ୍ୟ, ତାଙ୍କର ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ, ରାମଚନ୍ଦ୍ର ଯାଚକ ପ୍ରମୁଖ ସେହି ଧର୍ମରେ ଦୀକ୍ଷିତ ହୋଇଥିଲେ ।

୧୮୨୮ ମସୀହା ମାର୍ଚ୍ଚ ମାସ ୨୩ ତାରିଖରେ ଲ୍ୟାସି ଲେସିଙ୍କ ଦ୍ୱାରା ପ୍ରଥମେ ଗଙ୍ଗାଧର ଷଡ଼ଙ୍ଗୀଙ୍କର ଧର୍ମାନ୍ତର ଦୀକ୍ଷାନୁଷ୍ଠାନ ଖ୍ରୀଷ୍ଟୀୟ ସୂତ୍ର ଅନୁଯାୟୀ ଏହିପରି : "ଜଣେ ଶାହାଣ ବ୍ରାହ୍ମଣ ଫିରିଙ୍ଗୀ-ଧର୍ମ ଗ୍ରହଣ କରିବେ, ଏହି କଥା କଟକ ବଜାରରେ ରଷ୍ଟ ହୋଇ ଯାଇଥିବାରୁ ତାଙ୍କର ତୁବନ୍ ଦିନ ସକାଳୁ ମହାନଦୀ କୂଳସ୍ଥ ପାଦ୍ରୀ ସାହେବଙ୍କ ବଙ୍ଗଳା ନିକଟରେ ଲୋକେ ଜମା ହୋଇ ପଡ଼ିଲେ । ତୁବନ୍ ପୂର୍ବରୁ ଗଙ୍ଗାଧର ନିଜେ ଏହି ନୂତନ ଧର୍ମ କଅଣ ଏବଂ ତାହା ସେ କାହିଁକି ଗ୍ରହଣ କରୁଅଛନ୍ତି, ଲୋକଙ୍କୁ ବୁଝାଇ କହିଲେ, ପୁଣି ନଦୀ ଜଳ ଭିତରକୁ ଯାଇ ତୁବନ୍ ଦୀକ୍ଷା ଗ୍ରହଣ କଲେ । ଏଥି ମଧ୍ୟରେ ଲୋକମାନେ କ୍ରୋଧରେ ଅଧୀର ହୋଇ ଯାଇଥିଲେ, ପୁଣି ତାହାଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଲେ ; କିନ୍ତୁ ବୀର ଗଙ୍ଗାଧର ସେଥିରେ ଭୀତ ବା ବିଚଳିତ ହେଲେ ନାହିଁ ।" *

ଇସଲାମ୍ ଧର୍ମ ସଦୃଶ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ମଧ୍ୟ ସନ୍ତୋଷ-ଜନକ ହୋଇ ନଥିଲା । ଦୀର୍ଘ କୋଡ଼ିଏ ବର୍ଷ ପ୍ରଚାର-କାର୍ଯ୍ୟ ଚାଲିଲା ପରେ, ଅର୍ଥାତ୍ ୧୮୪୨ ମସୀହାରେ ଏଠାରେ ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ସଂଖ୍ୟା ଥିଲା ପ୍ରାୟ ଏକ ହଜାର । † ପ୍ରଥମେ ପ୍ରଥମେ ସାଧାରଣତଃ ମେରିଆ ବଳିରୁ ବଞ୍ଚିଥିବା ଏବଂ ଅଭାବ-ଅନଟନରେ ପଡ଼ିଥିବା ଲୋକେ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲେ । ୧୮୬୬

* ଖ୍ରୀଷ୍ଟୀୟ ମଣ୍ଡଳୀର ଇତିହାସ—ଶ୍ରୀ ପ୍ରଫୁଲ୍ଲ କୁମାର ପାତ୍ର, ଓଡ଼ିଶା ମିଶନ୍ ପ୍ରେସ୍, କଟକ (୧୯୪୩)—ପୃଷ୍ଠା : ୩୪ ।

† ତତ୍ରୈବ—ପୃଷ୍ଠା : ୩୬ ।

ମସୀହାରେ ନଅଙ୍କ ଦୁର୍ଭିକ୍ଷ ପରେ କିଛି ଅରକ୍ଷ, ଛତରଖିଆ, ଜାତିଚ୍ୟୁତ ବ୍ୟକ୍ତି ମଧ୍ୟ ଧର୍ମାନ୍ତରିତ ହୋଇଥିଲେ । 'ଉତ୍କଳ ଦୀପିକା' ସେଥିପାଇଁ ୧୮୬୭-୬୮ ମସୀହାର ବିଭିନ୍ନ ସଂଖ୍ୟାରେ ବାରମ୍ବାର ଉଦ୍‌ବେଗ ପ୍ରକାଶ କରିଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ– ୧୮୬୭ ମସୀହା ଜାନୁୟାରୀ ୧୨ ତାରିଖ ସଂଖ୍ୟାରେ 'ଉତ୍କଳ ଦୀପିକା' ଲେଖିଛନ୍ତି— "ଦୁର୍ଭିକ୍ଷ ହେତୁରୁ ଯେ କେତେ ବାଳକ ବାଳିକା ଅରକ୍ଷ ହୋଇ ଅଛନ୍ତି, ତାହା କାହାରି ଅବିଦିତ ନାହିଁ । ଅନୁସନ୍ଧାନୀ କମିସନରମାନେ ଏହାଙ୍କ ସଂଖ୍ୟା ୮୦୦୦ ନିଶ୍ଚୟ କରିଥିବାର ଆମ୍ଭେମାନେ ଶ୍ରବଣ କରିଅଛୁଁ ଓ ବୋଧ ହୁଅଇ ତାହା ଅତ୍ୟୁକ୍ତି ନୁହଇ । × × × ପାଦ୍ରୀ ସଂପ୍ରଦାୟ ଏମାନଙ୍କର ରକ୍ଷଣାବେକ୍ଷଣର ଉପଯୁକ୍ତ ପାତ୍ର ନୁହନ୍ତି । କାରଣ ସେ ଯେତେ ଯତ୍ନ ଓ ସତର୍କତା ସହିତ ଏ ଗୁରୁତର ଭାର ନିର୍ବାହ କରନ୍ତୁ, ଅତଏବ ଲୋକମାନେ ମନେ କରନ୍ତି ଯେ କେବଳ ଖ୍ରୀଷ୍ଟିୟାନ୍ ଦଳ ବୃଦ୍ଧି କରିବା ଲାଗି ସେମାନେ ଏ ଭାର ଗ୍ରହଣ କରିଅଛନ୍ତି ଓ ସରକାର ମଧ୍ୟ ଉକ୍ତ ଧର୍ମ ପ୍ରତି ପକ୍ଷପାତ ଦର୍ଶାଇ ତାହାଙ୍କଠାରେ ପିଲାମାନଙ୍କୁ ଅର୍ପଣ କରୁଅଛନ୍ତି ।" ଇତ୍ୟାଦି । ଏହା ବ୍ୟତୀତ ନିଜର ସାମାଜିକ ମର୍ଯ୍ୟାଦାବୃଦ୍ଧି ଓ ବୈଷୟିକ ଉନ୍ନତି ପାଇଁ କେତେକ ଲୋକ ସେତେବେଳେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ଆଦିବାସୀ ଓ ନୀଚ ବର୍ଣ୍ଣର ଲୋକ ଅଧିକ ଥିବାର ଜଣାପଡ଼େ ।

ଓଡ଼ିଶାରେ ସେତେବେଳେ ଖ୍ରୀଷ୍ଟ ଧର୍ମର ସୁପ୍ରସାର ନ ହେବା ମୂଳରେ ଗୋଟିଏ ବଡ଼ କାରଣ ଥିଲା । ଓଡ଼ିଆ ହିନ୍ଦୁମାନଙ୍କ ଉପରେ ମୁସଲମାନ ସରକାର ଯେପରି ଶୋଷଣ, ନିପୀଡ଼ନ ଚଳାଇ ଥିଲେ, ଖ୍ରୀଷ୍ଟିୟାନ୍ ଇଂରେଜ ସରକାର ସେପରି କରି ନାହାନ୍ତି ସତ୍ୟ—ବରଂ ହିନ୍ଦୁ ଧର୍ମ ଓ ଦେବଦେବୀଙ୍କୁ ବହୁ କ୍ଷେତ୍ରରେ ସମ୍ମାନ ତଥା ପୃଷ୍ଠପୋଷକତା ପ୍ରଦର୍ଶନ କରିଛନ୍ତି ଠିକ୍, କିନ୍ତୁ ପ୍ରଥମାବସ୍ଥାରେ ମିସନାରୀମାନେ ଜଗନ୍ନାଥ ତଥା ହିନ୍ଦୁ ଧର୍ମ ବିଷୟରେ ଯେଉଁ ଅପପ୍ରଚାର ଚଳାଇଥିଲେ, ତାହା ଓଡ଼ିଆମାନଙ୍କ ପ୍ରାଣରେ ନିଶ୍ଚୟ ପୀଡ଼ା ଦେଇଥିବ । ଜଗନ୍ନାଥ ଦର୍ଶନରେ ଆସୁଥିବା ଯାତ୍ରୀମାନଙ୍କ ମଧ୍ୟରୁ ପ୍ରତିବର୍ଷ କୋଡ଼ିଏ ବାର ହଜାର ଯାଏଁ ଲୋକ ମରୁଥିଲେ ବୋଲି ଉଇଲିୟମ୍ କେରୀ ଖୋଲାଖୋଲି ପ୍ରଚାର ଚଳାଇଥିଲେ । ରଥଯାତ୍ରାର ଭୟାବହ ଅପମୃତ୍ୟୁ ସଂପର୍କରେ ମଧ୍ୟ

ମିସନାରୀମାନେ ଭାରତ ଓ ଭାରତ ବାହାରେ ଗୁଜବ ରଟନା କଲେ । * ଏହି ଅପପ୍ରଚାରରେ ଭୁଲି ସୁପରିଚିତ ଇଂରାଜୀ କବି ରବର୍ଟ ସାଉଦି (୧୭୭୪-୧୮୪୩) ନିଜର 'କର୍ସ୍ ଅବ୍ କେହାମା' କାବ୍ୟଗ୍ରନ୍ଥସ୍ଥ 'ଜଗନଟ୍' କବିତାରେ ଲେଖି ପକାଇ ଥିଲେ—

Prone fall the frantic votaries in its road
And calling on the God
Their self-devoted bodies there they lay
To pave his chariot-way
On Jaga'naut they call

The ponderous car rolls on, and crushes all.
—Jaga'naut, Stanza V : The Curse of Kehama.

୧୮୬୮ ମସାହାରେ କଟକ ମିସନ୍ ପ୍ରେସ୍‌ରେ ମୁଦ୍ରିତ 'ଖ୍ରୀଷ୍ଟାନ୍ସର୍ଯ୍ୟଙ୍ଗିଯା' ନାମକ ଏକ ପୁସ୍ତିକାରେ ହିନ୍ଦୁ ଦେବ-ଅବତାରମାନଙ୍କୁ ନିନ୍ଦା କରି ଗୀତ ରଚନା କରା ଯାଇଥିଲା—

ଯୀଶୁ ଖ୍ରୀଷ୍ଟ ସତ୍ୟାବତାର
ତାଙ୍କ ବିନା ନାହିଁ ପାପୀ ଉଦ୍ଧାର ।

ମୀନ କୂର୍ମ ରାମ ବରାହ ବାମନ ଅଟନ୍ତି କଳ୍ପିତ ମିଥ୍ୟାବତାର ।। ଘୋଷା ।।

ଦେଖ ଯୀଶୁ ସ୍ୱୟଂ ଈଶ୍ୱର ଧରିଣ ନର କଳେବର
ପାପୀଙ୍କର ମହା ପରିତ୍ରାଣ ହେତୁ ପୃଥିବୀର ହେଲେ ସେ ଅବତାର ।।

× × × ×

ମାଛ ରାମ କୃଷ୍ଣ ବାମନ ପ୍ରଶୁରାମ ନୃସିଂହ ଜାଣ
କେହି ନୁହେଁ ଜଣେ ସତ୍ୟ ଅବତାର ନ ପାରନ୍ତି ପାପୁ କରି ଉଦ୍ଧାର ।।

---

* Proceedings of Orissa History Congress, Berhampur, Ganjam (1977)—Pages 122-28.

ନିଜ ଦୋଷରେ ସର୍ବେ ମଲେ ପାପୀ ପାଇଁ ପ୍ରାଣ ନ ଦେଲେ
କେହି ମଲ ବୁଡ଼ି ଭ୍ରାଣପଥ ଛୁଡ଼ି ନିଜ ପାପଦୋଷେ ହେଲେ ସହାର ।।
ଆଉ କେତେକ ଅବତାର ଥିଲେ କୂର୍ମ ମୀନ ଶୂକର
ଅତି ଅସମ୍ଭବ ଏଡ଼େ ତୁଚ୍ଛ ଜୀବ କରିବେ କି ନର-ପ୍ରାଣ ଉଦ୍ଧାର ।।

ପୁଣି ଓଡ଼ିଶାର ଠାକୁର-ରଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ରାଜନୈତିକ କାରଣରୁ ଦୁଇ ଦୁଇ ଥର ବନ୍ଦୀ କରି ପଦଚ୍ୟୁତ ଓ ଅପଦସ୍ଥ କରିବା, ତାଙ୍କର ମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ସର୍ବ ସମକ୍ଷରେ ଫାଶୀ ଦେବା, ତଥା ସେନାପତି ଜଗବନ୍ଧୁ ବିଦ୍ୟାଧରଙ୍କୁ ନାନା ପ୍ରକାର ହୀନସ୍ତା କରିବା ଜଗନ୍ନାଥ ଦେଶର ଲୋକଙ୍କୁ ଉଣା ଆଘାତ କରି ନଥିବ । ତେଣୁ ସେମାନେ ଶାସକର ଧର୍ମକୁ ସୁନଜରରେ ନ ଦେଖିବା ସ୍ୱାଭାବିକ ।

ଗୋଟିକ ପରେ ଗୋଟିଏ ବିଦେଶୀ ଶକ୍ତିର ଅନୁଶାସନରେ ଅଧୋଗତ ଓଡ଼ିଆ ଜାତି ସେତେବେଳକୁ ଏପରି ସଂକୀର୍ଣ୍ଣମନା ଓ ବଦ୍ଧଦୃଷ୍ଟି-ସଂପନ୍ନ ହୋଇ ପଡ଼ିଥିଲା ଯେ, ଉନ୍ନତତର ଓ ଶୁଭଙ୍କର ହେଲେ ବି କୌଣସି ନୂତନ ଧର୍ମ ଓ ସଂସ୍କାରକୁ ସହଜରେ ମାନି ନେବାପାଇଁ ସେ ପ୍ରସ୍ତୁତ ନ ଥିଲା । ବରଂ ଅନ୍ୟ ଧର୍ମାବଲମ୍ବୀଙ୍କୁ 'ମ୍ଳେଚ୍ଛ', 'ଗୋ-ଖାଦକ' ବୋଲି କହି ସେମାନଙ୍କଠାରୁ ନିରାପଦ ଦୂରତ୍ୱରେ ରହିବା ପାଇଁ ଉଦ୍ୟମ କରୁଥିଲା । ୧୮୬୬ ମସୀହାରେ କଲିକତାରେ ମଧୁସୂଦନ ଦାସଙ୍କର ଖ୍ରୀଷ୍ଟଧର୍ମ ଗ୍ରହଣ ଘଟଣାକୁ 'ଉତ୍କଳ ଦୀପିକା' ପସନ୍ଦ କରି ନ ଥିଲେ । ଦୀପିକାର ୧୮୬୬ ମସୀହା ଅଗଷ୍ଟ ମାସ ୧୮ ତାରିଖ ସଂଖ୍ୟାରେ ମଧୁବାବୁଙ୍କ ନାମରେ ରୀତିମତ କୁତ୍ସା କରା ଯାଇଥିଲା । ପିତା ଚୌଧୁରୀ ରଘୁନାଥ ଦାସ, ମଧୁସୂଦନଙ୍କୁ ତ୍ୟାଜ୍ୟ ପୁତ୍ର କରି ଦେଇଥିଲେ । କିନ୍ତୁ ମାତା ପାର୍ବତୀ ଦେବୀଙ୍କର ଶୂନ୍ୟ କୋଳକୁ ସମୟ ସମୟରେ ପୂର୍ଣ୍ଣ କରିବା ପାଇଁ ମଧୁବାବୁଙ୍କୁ ସତ୍ୟଭମାପୁର ଯିବାକୁ ପଡ଼ୁଥିବାରୁ ଗ୍ରାମ ଉପକଣ୍ଠରେ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ଗୃହ ନିର୍ମାଣ କରା ଯାଇଥିଲା । ଏକ ହିନ୍ଦୁ ବୁନିଯାଦୀ ବଂଶର ନୈଷ୍ଠିକ ଗୃହ ମଧ୍ୟରେ ଜଣେ ବିଧର୍ମୀ ଖ୍ରୀଷ୍ଟିୟାନ୍‌ର ସ୍ଥାନ କାହିଁ ?

ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ବ୍ରାହ୍ମ ଧର୍ମ ଓ ମହିମା ଧର୍ମର ପ୍ରଚାର ପରୋକ୍ଷ ଭାବରେ ଖ୍ରୀଷ୍ଟ ଧର୍ମ ପ୍ରସାରରେ ବାଧା ସୃଷ୍ଟି କରିଥିବାର ମନେ ହୁଏ ।

ଖ୍ରୀଷ୍ଟ ଧର୍ମ ଭଳି ଏ ଦୁଇଟି ଧର୍ମ ଥିଲା ଏକେଶ୍ୱରବାଦୀ ଏବଂ ମୂର୍ତ୍ତି ପୂଜାର ବିରୋଧୀ । ୧୮୨୮ ମସୀହାରେ ବଙ୍ଗ ଦେଶରେ ରାଜା ରାମମୋହନ ରାୟଙ୍କ ଦ୍ୱାରା ପାଶ୍ଚାତ୍ୟ ଧର୍ମ ଓ ସଂସାର ଆଦର୍ଶରେ 'ବ୍ରାହ୍ମ ସମାଜ' ସଂଗଠିତ ହୁଏ । ସେହିପରି ବମ୍ବେଠାରେ ୧୮୬୭ ମସୀହାରେ 'ପ୍ରାର୍ଥନା ସମାଜ' ଏବଂ ୧୮୭୫ ମସୀହାରେ 'ଆର୍ଯ୍ୟ ସମାଜ' ପ୍ରତିଷ୍ଠିତ ହୁଏ । ସେତିକିବେଳେ ମଧ୍ୟ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ନବ୍ୟ ହିନ୍ଦୁ ଧର୍ମର ଉଦ୍‌ଘୋଷଣା କରାଯାଏ । ଏହି ସବୁ ଧର୍ମୀୟ ବା ସାଂସ୍କୃତିକ ଅନୁଷ୍ଠାନ ସେତେବେଳେ ଖ୍ରୀଷ୍ଟିୟାନ୍ ମିସନ୍ ଭଳି ଧର୍ମୀୟ କାର୍ଯ୍ୟକଳାପ ସହିତ ଜନସେବା ଓ ସମାଜ ସଂସ୍କାରରେ ବ୍ରତୀ ହୋଇଥିଲା । ଏଗୁଡ଼ିକର ପ୍ରତିଷ୍ଠା ଊନବିଂଶ ଶତାବ୍ଦୀରେ ଭାରତୀୟ ରେନେସାଁସ୍‌ର ଗୋଟିଏ ଗୋଟିଏ ପଦକ୍ଷେପ ନିଶ୍ଚୟ । ବ୍ରାହ୍ମ ସମାଜର ପ୍ରଭାବ ମୁଖ୍ୟତଃ ଉତ୍ତର ପୂର୍ବ ଭାରତରେ, ଏବଂ ପ୍ରାର୍ଥନା ସମାଜ ତଥା ଆର୍ଯ୍ୟ ସମାଜର ପ୍ରଭାବ ମୁଖ୍ୟତଃ ଉତ୍ତର-ପଶ୍ଚିମ ଭାରତରେ ପଡ଼ିଥିବାର ଜଣାପଡ଼େ । ୧୮୫୪ ମସୀହା ବେଳକୁ ଓଡ଼ିଶାରେ ବ୍ରାହ୍ମ ସମାଜର ଶାଖା ପ୍ରତିଷ୍ଠିତ ହୋଇଥିଲା ଏବଂ ଗୌରୀଶଙ୍କର ରାୟ, ଜଗନ୍ମୋହନ ଲାଲ, ପ୍ୟାରୀମୋହନ ଆଚାର୍ଯ୍ୟ, ମଧୁସୂଦନ ରାଓ, ବିଶ୍ୱନାଥ କର ପ୍ରମୁଖ ଏଥିରେ ଯୋଗଦାନ କରିଥିଲେ । * ବ୍ରାହ୍ମ ଧର୍ମ ମୁଖ୍ୟତଃ ଆଧୁନିକ ଇଂରାଜୀ-ଶିକ୍ଷିତମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଅନ୍ୟ ପକ୍ଷରେ ମହିମା ଧର୍ମ ପ୍ରବର୍ତ୍ତିତ ହୋଇଥିଲା—ମୁଖ୍ୟତଃ ପ୍ରାକ୍ତନ ଗଡ଼ଜାତ ଅଞ୍ଚଳରେ ଏବଂ ଆଧୁନିକ ଶିକ୍ଷାଦୀକ୍ଷାଠାରୁ ଦୂରରେ ଥିବା ଜନସାଧାରଣଙ୍କ ମଧ୍ୟରେ । ମହିମା ଗୋସାଇଁ (୧୮୦୭ ?—୧୮୭୬) ଏହି ଶୂନ୍ୟବାଦୀ ଧର୍ମର ପ୍ରବର୍ତ୍ତନ କରିଥିଲେ ଏବଂ ଗୋବିନ୍ଦ ବାବା, ଭୀମ ଭୋଇ ପ୍ରମୁଖଙ୍କୁ ପ୍ରାଥମିକ ଶିଷ୍ୟ ଭାବରେ ଦୀକ୍ଷା ଦେଇଥିଲେ । ଜଣେ ଉଚ୍ଚକୋଟୀର କବି ଭାବରେ ଭୀମ ଭୋଇ ବହୁ ଭକ୍ତି-ସଙ୍ଗୀତ ରଚନା କରି ଆମ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

---

* ଉତ୍କଳକବି ମଧୁସୂଦନ ରାଓ ଓ ଉତ୍କଳେ ନବଯୁଗ—ଶ୍ରୀମତୀ ଅବନ୍ତୀ ଦେବୀ, ଜିଜ୍ଞାସା, କଲିକତା (୧୯୬୩)—ପୃଷ୍ଠା : ୧୬୭–୧୮୭ ।

ଓଡ଼ିଶାରେ ଯେତିକି ଖ୍ରୀଷ୍ଟ ଧର୍ମର ପ୍ରସାର ହୋଇଛି, ତାହା ମୂଳରେ ଅଛି—ମୁଖ୍ୟତଃ ମିସନାରୀମାନଙ୍କର ସେବାମୂଳକ, ଲୋକହିତକର କାର୍ଯ୍ୟ । ଆଧୁନିକ ଓଡ଼ିଶାର ନିର୍ମାଣ ପାଇଁ ସେମାନଙ୍କର ପ୍ରାଥମିକ ପ୍ରଚେଷ୍ଟାକୁ ସ୍ୱୀକାର ନ କଲେ, ଆମେ କୃତଘ୍ନ ହୋଇ ରହିବା । ସ୍କୁଲ-କଲେଜ୍ ସ୍ଥାପନ, ସ୍ତ୍ରୀ-ଶିକ୍ଷାର ପ୍ରସାର, ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା, କୁଷ୍ଠାଶ୍ରମ ଓ ଅନାଥାଶ୍ରମ ସ୍ଥାପନ, ପ୍ରିଣ୍ଟିଂ ପ୍ରେସ୍ ପ୍ରତିଷ୍ଠା, ପତ୍ରପତ୍ରିକା ପ୍ରକାଶ, ବିଭିନ୍ନ ପ୍ରକାର ପାଠ୍ୟପୁସ୍ତକ ରଚନା ପ୍ରଭୃତି କାର୍ଯ୍ୟରେ ମିସନାରୀମାନେ ସେତେବେଳେ ଅଗ୍ରଣୀ ହୋଇଥିଲେ । ମେରିଆ ତଥା ଅନ୍ୟାନ୍ୟ ନରବଳି, ସତୀ ଦାହ, ଶିଶୁକନ୍ୟା ହତ୍ୟା, ନାରୀ ଜାତିର ପରଦା ପ୍ରଥା, ଗୁଣିଗାରେଡ଼ୀ ପ୍ରୟୋଗ ଭଳି ସମାଜର ବିଭିନ୍ନ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂରୀକରଣରେ ସେମାନେ ସାଧ୍ୟମତେ କାର୍ଯ୍ୟ କରିଥିଲେ । ଏସବୁ ଦିଗରେ ସେମାନଙ୍କ ନିର୍ଦ୍ଦେଶିତ ପଥରେ ପରେ ଆମେ ଅଗ୍ରଗତି କରି ଆଧୁନିକ ଓଡ଼ିଶା ନିର୍ମାଣ କରିଛୁ ବୋଲି କହିଲେ ଭୁଲ୍ ହେବ ନାହିଁ । କେବଳ ଖ୍ରୀଷ୍ଟିୟାନ୍ ମିସନାରୀମାନେ ନୁହନ୍ତି ; ସେକାଳର ଓଡ଼ିଶାବାସୀ ଅଧିକାଂଶ ଖ୍ରୀଷ୍ଟ ଧର୍ମାବଲମ୍ବୀ ଇଂରେଜ ସାହେବ ଜନସମାଜର ଉନ୍ନତି ପାଇଁ ବିଭିନ୍ନ କାର୍ଯ୍ୟ କରିଥିବାର ପ୍ରମାଣ ମିଳେ । ସେହିପରି ଜଣେ ମହାନୁଭବ ଇଂରେଜ ସାହେବ ଉଇଲିୟମ୍ କେରି ଲେସିଙ୍କ ବିୟୋଗ-ପଞ୍ଜୀ ପ୍ରକାଶ କରି 'ଉତ୍କଳ ଦୀପିକା' ୧୮୭୦ ମସୀହା ଫେବ୍ରୁଆରୀ ମାସ ପାଞ୍ଚ ତାରିଖ ସଂଖ୍ୟାରେ ଲେଖିଛନ୍ତି—"ଆମ୍ଭେମାନେ ଅତିଶୟ ଶୋକ ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ଗତ ସୋମବାର ଦିନ ଦୁଇ ପ୍ରହର ସମୟରେ ଡବ୍ଲିଉ କେରି ଲେସି ସାହେବ ଚିରକାଳ ନିମିତ୍ତ ସଂସାରରୁ ବିଦାୟ ନେଲେ । ଏହାଙ୍କ ମୃତ୍ୟୁରେ ଏ ନଗରବାସୀମାନେ କି ପର୍ଯ୍ୟନ୍ତ ଦୁଃଖିତ ହୋଇଅଛନ୍ତି କହିବାର ନୁହଇ । × × × ସେ ଇଂରେଜ ଥିଲେ ହେଁ ଅତ୍ରତ୍ୟ ଦେଶୀୟ ଲୋକମାନେ ତାହାଙ୍କୁ ଓଡ଼ିଆ ଜ୍ଞାନ କରୁଥିଲେ ଓ ଯେ ତାହାଙ୍କ ପାଖକୁ ଯାଉଥିଲା, ଓଡିଆ ଭିନ୍ନ ତାହାକୁ ଅନ୍ୟ ଭାଷାରେ ସମ୍ବୋଧନ କରୁ ନ ଥିଲେ । ଅଧୀନସ୍ଥ ଲୋକଙ୍କ ଉପରେ ତାଙ୍କର ଯେମନ୍ତ ଦୟା ଓ ସରଳ ଭାବ ଥିଲା, ତାହା ଅକଥନୀୟ ଓ ବହୁ କାଳରେ ବିସ୍ମରଣ ହେବାର ନୁହଇ । ମଙ୍ଗଳବାର ଦିନ ତାହାଙ୍କ କବର ହେବା କାଳରେ ଯେ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ ;

ସେହି ବ୍ୟକ୍ତି ଜାଣେ ଯେ ଜେସି ସାହେବଙ୍କୁ ଅତ୍ରତ୍ୟ ଲୋକେ କେତେ ସ୍ନେହ ଓ ମାନ୍ୟ କରୁଥିଲେ ।" ଇତ୍ୟାଦି । ବଙ୍ଗ ଦେଶରେ ତ ସେତେବେଳେ ସଂସ୍କୃତ ପଞ୍ଚକନ୍ୟା ଶ୍ଳୋକ ରୀତିରେ ଡେଭିଡ୍ ହେୟାର୍, ଉଇଲିୟମ କେରି ପ୍ରମୁଖ ପାଞ୍ଚ ଜଣ ଦେଶହିତୈଷୀ ଗୋରା ସାହେବଙ୍କ ନାମରେ ରଚିତ ଶ୍ଳୋକ ଲୋକଙ୍କ ତୁଣ୍ଡେ ତୁଣ୍ଡେ ଖେଳି ବୁଲୁଥିଲା :

ହେୟାର୍ କଲ୍‌ଭିନ୍ ପାମରଶ୍ଚ କେରି ମାର୍ଶମେନ୍ ସ୍ତଥା
ପଞ୍ଚ ଗୋରାଃ ସ୍ମରେନ୍ନିତ୍ୟଂ ମହାପାତକ ନାଶନମ୍ ॥

## ସାଂପ୍ରତିକ ସ୍ଥିତି

ଧର୍ମଧାରାର ଏହି ଐତିହାସିକ ଚିତ୍ର ସମକ୍ଷରେ ଥୋଇ ଆମର ସାଂପ୍ରତିକ ସ୍ଥିତିକୁ ଦୃଷ୍ଟି ଦେବାକୁ ହେବ । ପୂର୍ବରୁ ଯେଉଁ ଧର୍ମଗୁଡ଼ିକ ସଂପର୍କରେ ଆଲୋଚନା ହେଲା, ଏବେ ସେହିସବୁ ଧର୍ମ ଏବଂ ସେଗୁଡ଼ିକରୁ ଉଦ୍ଭୂତ ବିଭିନ୍ନ ସଂପ୍ରଦାୟ ଓଡ଼ିଶାରେ ଉଣାଧିକେ ଅନୁସୃତ ହେଉଥିବାର ଦେଖାଯାଏ । ହିନ୍ଦୁ ଧର୍ମ ଏବଂ ତାହାର ବିଭିନ୍ନ ଶାଖା-ପ୍ରଶାଖାର ପ୍ରଭାବ ତନ୍ମଧ୍ୟରେ ସବୁଠାରୁ ଅଧିକ । ଏହି ହିନ୍ଦୁ ଧର୍ମର ବହୁ ଦେବଦେବୀ, ବହୁ ଉପଦେବତା—ଲୌକିକ ଓ ଶାସ୍ତ୍ରୀୟ ଉଭୟ ପ୍ରକାର—ସୂତିକା-ଗୃହର ଷଠୀ ଦେବୀଙ୍କଠାରୁ ସମନ୍ୱୟ-ବାଦୀ ଶ୍ରୀଜଗନ୍ନାଥଙ୍କ ପର୍ଯ୍ୟନ୍ତ ! ଶ୍ରୀଜଗନ୍ନାଥଙ୍କୁ ଏବେ ଆଉ ପୂର୍ବର 'ରାଷ୍ଟ୍ରଦେବତା' ବୋଲି କହିହେବ ନାହିଁ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପ୍ରଭାବରେ 'ବିଶ୍ୱାସର ଯୁଗ' ପ୍ରାୟ ଅତିକ୍ରାନ୍ତ, ଏବଂ 'କାର୍ଯ୍ୟ-କାରଣ-ଜ୍ଞାନର ଯୁଗ' ସମାଗତ । ପ୍ରକୃତିର ବହୁ ରହସ୍ୟ ଉଦ୍‌ଘାଟିତ ହୋଇଥିବାରୁ ମଣିଷ ଏବେ ପୂର୍ବାପେକ୍ଷା ଅଧିକ ଐଶ୍ୱର୍ଯ୍ୟଶାଳୀ ଏବଂ ଐଶୀ ଶକ୍ତି ନିକଟରେ ସ୍ୱତନ୍ତ୍ର । ତେଣୁ ଧର୍ମ ସାଧନା ଓ ଈଶ୍ୱର-ବିଶ୍ୱାସ ଶିଥିଳ ହୋଇ ପଡ଼ିବା ସ୍ୱାଭାବିକ । ଫଳରେ ଆଜି ଶ୍ରୀଜଗନ୍ନାଥ ଓ ଠାକୁର ରାଜାଙ୍କ ଗୁରୁତ୍ୱ କେତେକ ପରିମାଣରେ ହାନି ହୋଇ ଯାଇଛି । ଏବେ ଆମର ଯେଉଁ ଜଗନ୍ନାଥ-ଭକ୍ତି, ତହିଁରେ ନିଷ୍ଠାପରତା ଓ ଅନ୍ତରଙ୍ଗ ଭାବ ତୁଳନାରେ ଛଳନା ଓ ନ୍ୟସ୍ତ ସ୍ୱାର୍ଥ ଅଧିକ ଦେଖାଯାଉଛି । ବିଶେଷତଃ ୧୯୪୭ ମସିହାରେ ସ୍ୱାଧୀନତା-ପ୍ରାପ୍ତି ପରେ ରାଷ୍ଟ୍ରୀୟ ଚେତନାରେ ଧର୍ମ ନିରପେକ୍ଷତା ବଳବତ୍ତର ହୋଇଥିବାରୁ ଓଡ଼ିଶାର ଧର୍ମୀୟ ଚିନ୍ତାରେ

ଏକ ପ୍ରକାର ବିପର୍ଯ୍ୟୟ ସୃଷ୍ଟି ହୋଇଛି । ଧର୍ମ ନିରପେକ୍ଷତାକୁ ଅନେକେ ଧର୍ମହୀନତା ବୋଲି ବୁଝୁଛନ୍ତି । ୧୯୫୪ ମସାହା 'ଶ୍ରୀଜଗନ୍ନାଥ ଟେମ୍ପଲ୍ ଆକ୍ଟ' ଅନୁସାରେ ଜନପ୍ରିୟ ଓଡ଼ିଶା ସରକାର ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱ ନିଜ ହାତରେ ଗ୍ରହଣ କରିଛନ୍ତି ଏବଂ ଠାକୁର ରାଜାଙ୍କର କର୍ତ୍ତୃତ୍ୱ 'ଗଜପତି ମହାରାଜ ସେବା' ମଧ୍ୟରେ ସଙ୍କୁଚିତ କରି ଦେଇଛନ୍ତି । ରାଜ୍ୟ ସରକାରଙ୍କର ଏହି କାର୍ଯ୍ୟକୁ ହେର୍‌ମାନ୍ କୁଲ୍‌କେଙ୍କ ଭଳି ପାଶ୍ଚାତ୍ୟ ଗବେଷକ ତିର୍ଯ୍ୟକ୍ ଦୃଷ୍ଟିରେ ଦେଖିଛନ୍ତି । * ଶ୍ରୀମନ୍ଦିର ଓ ଜଗନ୍ନାଥଙ୍କ ସମ୍ପର୍କରେ ପରସ୍ପରବିରୋଧୀ ନୀତିମାନ ଅନୁସୃତ ହେବାର ଦେଖା ଯାଉଛି । ଆମେ ଜଗନ୍ନାଥ ଧର୍ମର ଉଦାର ସମନ୍ୱୟ-ବାଦ ଘେନି ବାହ୍ୱାସ୍ଫୋଟ ମାରୁଛୁ, କିନ୍ତୁ ଶ୍ରୀମନ୍ଦିର ଭିତରକୁ ହରିଜନ, ମୁସଲମାନ ବା ଖ୍ରୀଷ୍ଟିୟାନ୍‌ମାନଙ୍କର ପ୍ରବେଶ ସହ୍ୟ କରି ପାରୁଛୁ କି ?

ଐତିହାସିକମାନଙ୍କ ମତରେ—ମଣିଷ ସଭ୍ୟ ହୋଇଛି ପ୍ରାୟ ଦଶ ହଜାର ବର୍ଷ ତଳେ ଏବଂ ମଣିଷ-ସଭ୍ୟତାରେ ଈଶ୍ୱର-ବିଶ୍ୱାସ ଦେଖା ଦେଇଛି ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ । ତହିଁରୁ ଗୋଟିକ ପରେ ଗୋଟିଏ ସଂଗଠିତ ଆନୁଷ୍ଠାନିକ ଧର୍ମର ସୃଷ୍ଟି ହୋଇଛି । କାହିଁକି ଏ ଧର୍ମ ଓ ଈଶ୍ୱର-ବିଶ୍ୱାସର ସୃଷ୍ଟି ? ମଣିଷ ବହୁ ଦିଗରୁ ଦୁର୍ବଳ ଓ ଅପୂର୍ଣ୍ଣ—ତାହାର ସବୁ ପ୍ରକାର ଦୈହିକ ବା ଇନ୍ଦ୍ରିୟଗତ ଶକ୍ତି ସୀମାବଦ୍ଧ । ଅନେକ ଆଶା-ଆକାଙ୍କ୍ଷା ତାହାର ଭଗ୍ନ ହୁଏ—ସ୍ୱପ୍ନ ଓ ପରିକଳ୍ପନା ବ୍ୟର୍ଥ ହୋଇଯାଏ—ନିଷ୍ଫଳ ହୋଇଯାଏ କଠିନ ସାଧନା । ତେଣୁ ସେ ନିଜଠାରୁ ଅଧିକ ଶକ୍ତିଶାଳୀ ଓ ବିଭୂତିବାନ୍ ଏକ ମହାନ୍ ବିରାଟ ସତ୍ତାର ଧ୍ୟାନଧାରଣା କରିଛି—ଯାହା ତାକୁ ପରିପୂର୍ଣ୍ଣ କରିବ ଏବଂ ସାଫଲ୍ୟ ବା ସାର୍ଥକତା ଦିଗରେ ଆଗେଇ ନେବ । ସେହି ବିରାଟ ସତ୍ତା ବା ଈଶ୍ୱରଙ୍କ ଉପରେ ବିଶ୍ୱାସ-ସ୍ଥାପନ ପୂର୍ବକ ତାଙ୍କର ଚର୍ଚ୍ଚା ଓ ପୂଜା-ଆରାଧନା ପାଇଁ ସେ ପୁଣି ଧର୍ମ ସୃଷ୍ଟି କରିଛି । ଅଧିକନ୍ତୁ ମଣିଷର ଚିନ୍ତା-ଚେତନା ଓ ଜୀବନ-ଚର୍ଯ୍ୟା କ୍ଷେତ୍ରରେ ଉଚ୍ଚ ଆଦର୍ଶ ଉପସ୍ଥାପନ କରି ମାନବିକ

---

*Kings without a Kingdom : The Rajas of Khurda and the Jagannath Cult—Hermann Kulke, South Asia, Heidelberg (1974)

ଗୁଣର ବିକାଶରେ ଧର୍ମର ଉପଯୋଗିତା ଯଥେଷ୍ଟ । କିନ୍ତୁ ପୃଥିବୀର ବିଭିନ୍ନ ଧର୍ମରେ ଏହି ଉପଯୋଗିତା କେତେଦୂର ପୂରଣ ହୋଇ ପାରିଛି ? ଈଶ୍ୱର ବିଶ୍ୱାସ ମଣିଷକୁ ଉନ୍ନତ ଓ ପରିପୂର୍ଣ୍ଣ ହେବାରେ କେତେ ଦୂର ସାହାଯ୍ୟ କରିଛି ? ଇତିହାସରେ ଦେଖା ଯାଉଛି—ବିଶ୍ୱର ସଂଗଠିତ ଆନୁଷ୍ଠାନିକ ଧର୍ମଗୁଡ଼ିକ ମଧ୍ୟରୁ ଅଧିକାଂଶ ଜନ ସମାଜର ମଙ୍ଗଳ ତୁଳନାରେ କ୍ଷତି କରିଛି ଅଧିକ— ଜୀବନକୁ ଐଶ୍ୱର୍ଯ୍ୟମୟ କରିବା ଅପେକ୍ଷା ହଳାହଳମୟ କରିଛି ବେଶି । ମାନବ ଜାତି ପ୍ରାଚୀନ କାଳରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ସମ୍ମୁଖୀଭୂତ ହୋଇ ଲକ୍ଷ୍ୟ କରୁଛି—ଧର୍ମ ଓ ଈଶ୍ୱରଙ୍କ ନାମରେ କିପରି ଅନ୍ୟାୟ, ଅତ୍ୟାଚାର, ଅସହିଷ୍ଣୁତା, ରକ୍ତପାତ ଓ ଧ୍ୱଂସର ତାଣ୍ଡବ ଲୀଳା ଚାଲିଛି ବରାବର । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀଠାରୁ ତ୍ରୟୋଦଶ ଶତାବ୍ଦୀ ଯାଏଁ ପ୍ରାୟ ଦୁଇ ଶହ ବର୍ଷ କାଳ ଖ୍ରୀଷ୍ଟିୟାନ୍‌ମାନେ ପାଲେଷ୍ଟାଇନ୍ ଉଦ୍ଧାର ପାଇଁ ମୁସଲମାନଙ୍କ ସହିତ ସଂଘର୍ଷ ଲଗାଇ ଥିଲେ । ଥରେ ନୁହେଁ, ଦୁଇ ଥର ନୁହେଁ, ଆଠ ଆଠ ଥର 'କ୍ରୁସେଡ୍' ଚାଲିଲା । ଫଳରେ ହଜାର ହଜାର ଲୋକ ପ୍ରାଣ ଦେଲେ ଏବଂ ଦାସବୃତ୍ତି ଗ୍ରହଣ କଲେ । ଇଉରୋପର ବୀଭତ୍ସ ଚର୍ଚ୍ଚ-ବିଗ୍ରହଜୟ 'ଇନ୍‌କୁଇଜିସନ୍' ବିଷୟ ଆପଣ-ମାନେ ଜାଣନ୍ତି । ପ୍ରାୟ ଚାରି ଶହ ବର୍ଷ କାଳ ଏହି ଘୃଣ୍ୟ ଅନୁଷ୍ଠାନ ପୋପ୍‌ଙ୍କ ତତ୍ତ୍ୱାବଧାନରେ ଥାଇ, କିପରି ବୈଜ୍ଞାନିକ ସିଦ୍ଧାନ୍ତ ଓ ସ୍ୱାଧୀନ ଚିନ୍ତାର ତଣ୍ଟି ଚିପି ଧରିଥିଲା, ସେକଥା ଫେଡ଼ି କହିବା ଲୋଡ଼ା ନାହିଁ । ପାଶ୍ଚାତ୍ୟ ଦେଶ-ମାନଙ୍କରେ ଏବେ ମଧ୍ୟ ଖ୍ରୀଷ୍ଟ ଧର୍ମର ପ୍ରୋଟେଷ୍ଟାଣ୍ଟ୍ ଓ ରୋମାନ୍ କେଥଲିକ୍‌ଙ୍କ ମଧ୍ୟରେ ବାଦ୍ ବିବାଦ ଓ ସଂଘର୍ଷ ଚାଲିଥିବାର ସମ୍ବାଦ ମିଳୁଛି । ଭାରତରେ ବୌଦ୍ଧ-ବ୍ରାହ୍ମଣ୍ୟ ଏବଂ ଶୈବ-ବୈଷ୍ଣବ ଧର୍ମର ବିବାଦ ବହୁବିଦିତ । ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ କାଳରେ ଅଗଣିତ ବୌଦ୍ଧ ଧର୍ମାବଲମ୍ବୀଙ୍କୁ ନିପୀଡ଼ିତ କରାଗଲା—ବହୁ ବୌଦ୍ଧ-କୀର୍ତ୍ତି ନଷ୍ଟଭ୍ରଷ୍ଟ କରି ଦିଆଗଲା । ବର୍ତ୍ତମାନ ଦେଶର ପ୍ରାଚୀନ ଶିବଲିଙ୍ଗଗୁଡ଼ିକୁ ଯଦି ପରୀକ୍ଷା କରି ଦେଖାଯାଏ, ତାହାହେଲେ ପ୍ରମାଣ ମିଳିବ ଯେ— ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଥିଲା ବୁଦ୍ଧମୂର୍ତ୍ତି—ପ୍ରତିକ୍ରିୟାଶୀଳ ବ୍ୟକ୍ତିମାନଙ୍କ ଶିକାରରେ ସେଗୁଡ଼ିକୁ କାଟିକୁଟି ଶିବଲିଙ୍ଗରେ ପରିଣତ କରା-ଯାଇଛି ମାତ୍ର । ଏ ଯୁଗରେ ହିନ୍ଦୁ-ମୁସଲମାନଙ୍କର ରକ୍ତକ୍ଷରୀ ସଂଘର୍ଷ ତ ଆପଣମାନଙ୍କ ମଧ୍ୟରୁ କେହି କେହି ଅଙ୍ଗେ ନିଭେଇ ଥିବେ ! ପୁଣି ଗୋଟିଏ

ଧର୍ମର ବିଭିନ୍ନ ଶାଖାପ୍ରଶାଖା ମଧ୍ୟରେ କି ଅସହିଷ୍ଣୁତା ଓ ବୈରୀଭାବ ! ଇସଲାମ୍ ଧର୍ମର ସିଆ-ସୁନ୍ନୀଙ୍କ ଭିତରେ ଏବଂ ଶିଖ୍ ଧର୍ମର ଅକାଳୀ-ନିରଙ୍କରୀଙ୍କ ମଧ୍ୟରେ ବାଦ ବିସମ୍ବାଦ ଏବେ ଲାଗି ରହିଛି । ନିର୍ଦ୍ଦିଷ୍ଟ ଭାବେ ଓଡ଼ିଶା କଥା ତ ପୂର୍ବରୁ ଆଲୋଚିତ ହୋଇଛି ! ବର୍ତ୍ତମାନ ମୋର ପ୍ରଶ୍ନ ହେଉଛି—ଈଶ୍ୱର କଣ ମଣିଷ ସମାଜରେ ଭେଦଭାବ, ପରସ୍ପର ଅସହିଷ୍ଣୁତା ମଧ୍ୟରେ ପୂଜିତ ହେବାକୁ ଚାହାନ୍ତି ? ଧର୍ମ କଣ ସଂଘର୍ଷ ମଧ୍ୟରେ ନରରକ୍ତରେ ଅଭିଷିକ୍ତ ହେବାକୁ ଚାହେଁ ?

ଗତ ୧୯୭୮ ମସିହା ନଭେମ୍ବର ମାସରେ ଦକ୍ଷିଣ ଆମେରିକାର ଗୁୟାନାସ୍ଥ ଜୋନସ-ଟାଉନରେ 'ପିପଲ୍‌ସ୍ ଟେମ୍ପଲ୍ ଚର୍ଚ୍ଚ' ନାମକ ଏକ ଧର୍ମାନୁଷ୍ଠାନର ନଅ ଶହରୁ ଅଧିକ ବ୍ୟକ୍ତି ନିଜର ଗୁରୁ ରେଭରେଣ୍ଡ୍ କିମ୍ ଜୋନ୍‌ସ୍‌ଙ୍କ ସହିତ ଏକ ସଙ୍ଗରେ ପ୍ରାଣବଳି ଦେଇଛନ୍ତି—ଏହି ଭୟଙ୍କର ଲୋମହର୍ଷକ ସମ୍ବାଦ ଆପଣମାନେ ପାଇଥିବେ । ଧର୍ମ ନାମରେ ଏହା ଗଣହତ୍ୟା, ନା ସାମୂହିକ ଆନୁଷ୍ଠାନିକ ଆତ୍ମାହୁତି ? ଅଳ୍ପ କେତେ ବର୍ଷ ତଳେ ଏ ଦେଶର ସେହିପରି ଏକ ଅର୍ଦ୍ଧ ସାମରିକ ଧର୍ମୀୟ ସଂସ୍ଥା ହତ୍ୟା, ରକ୍ତପାତ ଓ ଆତ୍ମାହୁତି ମଧ୍ୟରେ ଶକ୍ତି-ପରୀକ୍ଷା ଦେଇଥିବାର ଆପଣମାନେ ଜାଣନ୍ତି । ଏବେ ପୁଣି ଏଠାରେ ନୂଆ ନୂଆ ଧର୍ମ-ସଂପ୍ରଦାୟ ଓ ଗୋଷ୍ଠୀ ପ୍ରତିଷ୍ଠିତ ହେଉଛି ଏବଂ ବିଭିନ୍ନ ଧର୍ମଗୁରୁ 'ବାବା-ମାଆ'ମାନଙ୍କର ଘନ ଘନ ଆବିର୍ଭାବ ଘଟୁଛି । ଏହାଦ୍ୱାରା ଦେଶର ବା ଜନ ସମାଜର କି କାର୍ଯ୍ୟ ସାଧିତ ହେଉଛି, ବୁଝିହେଉ ନାହିଁ । ବହୁ ଲୋକ ନିର୍ବିଚାରରେ ସେମାନଙ୍କ ଅନୁସରଣ କରୁଥିବାର ଦେଖାଯାଉଛି । ଆମର କେହି କେହି ନେତୃସ୍ଥାନୀୟ ବ୍ୟକ୍ତି ଏହାଦ୍ୱାରା ସାଂପ୍ରତିକ ସମାଜର ପାପତାପ-ନିରାମୟ ହେବାର ଛବି ଆତ୍ମସନ୍ତୋଷ ଲାଭ କରୁଛନ୍ତି । ପାପତାପରେ ଲିପ୍ତ ହୋଇ ସାରି ତହିଁରୁ ମୁକ୍ତି ଲାଭ ପାଇଁ 'ବାବା-ମାଆ'ଙ୍କ ପାଖକୁ ଯିବା ଦରକାର, ନା 'ବାବା ମାଆ'ଙ୍କ ବାହୁଛାୟା ତଳେ ନିରାପଦରେ ଯାବତୀୟ ପାପାଚରଣ କରାଯାଇ ପାରେ ବୋଲି ଯିବା ଦରକାର ? ଆମେମାନେ ତ ତଟସ୍ଥ ହୋଇ ଦେଖୁଛୁ—ଏହି ତଥାକଥିତ ଧର୍ମଗୁରୁ ଧର୍ମୀୟ ସଂସ୍ଥାମାନଙ୍କ କାର୍ଯ୍ୟକଳାପ ଦ୍ୱାରା ଆମ ପୀଡ଼ିତ ସମାଜ ପ୍ରାୟ ବ୍ୟାଧିମୁକ୍ତ ହୋଇ ପାରୁ ନାହିଁ । ବରଂ ଚତୁର୍ପାର୍ଶ୍ୱର ଘଟଣାବଳୀରୁ ଜଣାପଡ଼ୁଛି—ଆମ ସମାଜର ପାପତାପ ଭଣା ହେବା ପରିବର୍ତ୍ତେ

କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି । ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖନୀୟ ଯେ—ସିଂହଳର ବିଜ୍ଞ ମନୀଷୀ ଡକ୍ଟର୍ ଆବ୍ରାହମ୍ କଭୁର ଧର୍ମାଚରଣ ନାମରେ ଏହି 'ବାବା-ମାଆ'ମାନଙ୍କର ଛଳନା ଓ ଭଣ୍ଡାମି ଏବେ ପଦାରେ ପକାଇ ଦେଇଛନ୍ତି ।* ପ୍ରକୃତରେ, ତଥାକଥିତ ଏହି ଧର୍ମଗୁରୁମାନେ ଆମର କାଳିମାଲିପ୍ତ ସମାଜରେ ନୈତିକ ତ୍ରାଣକର୍ତ୍ତା ରୂପେ ଦେଖା ଦେଇଛନ୍ତି । ପ୍ରଚଳିତ ସମାଜ-ବ୍ୟବସ୍ଥା ପାପ, ଅନ୍ୟାୟ-ଅନାଚାର କରିବା ପାଇଁ ଯେପରି କ୍ଷେତ୍ର ପ୍ରସ୍ତୁତ କରିଛି, ତ୍ରାଣକର୍ତ୍ତାମାନଙ୍କର ଆବିର୍ଭାବ ପାଇଁ ସେହିପରି ସୁଯୋଗ ସୃଷ୍ଟି କରିଛି । ତେଣୁ କୌଣସି 'ବାବା' ବା 'ମାଆ'ଙ୍କର ଶିଷ୍ୟତ୍ୱ ଗ୍ରହଣ କରିବା ଏବେ ମର୍ଯ୍ୟାଦାର ଚିହ୍ନ ରୂପେ ବିବେଚିତ ହେଉଛି । ଏହାଦ୍ୱାରା 'ବାବା'-'ମାଆ'ମାନଙ୍କର ପ୍ରତିଷ୍ଠା ବଢ଼ିବା ସଙ୍ଗେ ସଙ୍ଗେ ଅପରାଧୀ ଶିଷ୍ୟ-ଶିଷ୍ୟାମାନେ ମାନ୍ୟତାପ୍ରାପ୍ତ ହେଉଛନ୍ତି । ମୋଟାମୋଟି ଉଭୟଙ୍କ ପକ୍ଷରେ ଏହି ବ୍ୟାପାରଟି ଏକ ଲାଭଜନକ ବ୍ୟବସାୟରେ ପରିଣତ ହୋଇଛି ।

ଶହେ ବର୍ଷ ତଳେ କାର୍ଲ ମାର୍କସ୍ (୧୮୧୮—୧୮୮୩) ଧର୍ମକୁ ଜନତାର ଅଫିମ ନାମରେ ଆଖ୍ୟାତ କରିଥିଲେ । କଥାଟି ଉଡ଼ାଇ ଦେଇ ହେବ ନାହିଁ । ଅଧିକାଂଶ କ୍ଷେତ୍ରରେ ଏବେ ଧର୍ମ ଓ ଈଶ୍ୱର-ବିଶ୍ୱାସ ଜନସାଧାରଣଙ୍କ ଦେହ ମନରେ ଅଫିମ ରୂପେ କାର୍ଯ୍ୟ କରୁଥିବାର ହିଁ ଦେଖାଯାଉଛି । ସେଥିପାଇଁ ଆଜି ପୃଥିବୀର କେତେକ କମ୍ୟୁନିଷ୍ଟ ରାଷ୍ଟ୍ରରେ ଧର୍ମାଦି ବ୍ୟାପାର ତୁଚ୍ଛ, ଅକିଞ୍ଚିତ୍କର ବୋଲି ବିବେଚିତ ହେଉଛି । ଇଉରୋପ୍‌ର ଆଲବାନିଆ ରାଷ୍ଟ୍ରରୁ ସକଳ ପ୍ରକାର ସଂଗଠିତ ଆନୁଷ୍ଠାନିକ ଧର୍ମକୁ ନିର୍ବାସନ କରାଯାଇଥିବା ବିଷୟରେ ଆପଣମାନେ ଅବହିତ ଥିବେ । ସେ ଦେଶରେ ଥିବା ଦୁଇହଜାର ଏକସ୍ତରୀ ଗୋଟି ଗୀର୍ଜା ଓ ମସଜିଦ୍ ୧୯୬୭ ମସୀହାରୁ ବନ୍ଦ କରି ଦିଆଯାଇଛି । ମାର୍କିନ ଯୁକ୍ତରାଷ୍ଟ୍ରରେ ଏବେ 'ଆମେରିକାନ୍ ଏଥେଇଷ୍ଟ ଏସୋସିଏସନ୍' ନାମକ ଏକ ସଂସ୍ଥା କାର୍ଯ୍ୟ କରୁଛି । ଏହାର ସଙ୍ଘନେତ୍ରୀ ଡକ୍ଟର ମାଡାଲିନ୍ ଓ-ହେୟାର୍ ଗତ ବର୍ଷ କଲିକତା ଆସିଥିଲେ ଏବଂ ସର୍ବସାଧାରଣଙ୍କ ସମକ୍ଷରେ ଡାକପୁକାର୍‌ରେ ବିଭିନ୍ନ

---

*ଦ୍ରଷ୍ଟବ୍ୟ : Begone Godmen — Dr. Abraham T. Kavoor, Jaico Press Pvt. Ltd., Bombay (1977).

ଧର୍ମଗ୍ରନ୍ଥଗୁଡ଼ିକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ବାଇବେଲ୍‌ର କେତେକ ପୃଷ୍ଠା ଟୁକୁରା ଟୁକୁରା କରି ଚିରାଇ ପକାଇଥିଲେ । କେତେ ବର୍ଷ ତଳେ ଆମର ବିଶିଷ୍ଟ ଜନସେବକ ଲକ୍ଷ୍ମୀନାରାୟଣ ସାହୁ (୧୮୯୦—୧୯୬୩) ଏବଂ ସଂସ୍କାରକ ବୈରାଗୀ ଚରଣ ମିଶ୍ର (୧୮୮୫—୧୯୬୬) ଓଡ଼ିଶାରେ ସେହିପରି ଧର୍ମ କ୍ଷେତ୍ରରେ ଥିବା ବିଭିନ୍ନ ପ୍ରକାର ଗ୍ଳାନି ଓ ମତାନ୍ଧତା ଦୂରୀକରଣ ପାଇଁ ପଦକ୍ଷେପ ନେଇଥିବାର ଆପଣମାନେ ଜାଣନ୍ତି । ମାର୍କସ୍‌ଙ୍କ ଠାରୁ ମିଶ୍ରଙ୍କ ପର୍ଯ୍ୟନ୍ତ ଏହି ଦୃଷ୍ଟାନ୍ତ ସବୁ ଦେବାର ଉଦ୍ଦେଶ୍ୟ ହେଉଛି—ବିଭିନ୍ନ ସମୟରେ ବିଜ୍ଞ ବ୍ୟକ୍ତିମାନେ ଧର୍ମ ଓ ଈଶ୍ୱର-ବିଶ୍ୱାସ ନାମରେ ଚାଲିଥିବା ଅନ୍ୟାୟ, ଅନାଚାର, ଶୋଷଣ ନିପୀଡ଼ନ ପ୍ରଭୃତି ସହ୍ୟ କରି ପାରି ନାହାନ୍ତି, ଏବଂ ଏହାର ପ୍ରବଳ ପ୍ରତିବାଦ କରିବା ସଙ୍ଗେ ସଙ୍ଗେ ମାଧ୍ୟମରେ ଧର୍ମର ଗ୍ଳାନି ଦୂର କରିବା ପାଇଁ କାର୍ଯ୍ୟ କରିଛନ୍ତି ।

ବନ୍ଧୁଗଣ, ଆପଣମାନେ ମୋତେ ଭୁଲ୍ ବୁଝିବେ ନାହିଁ, କିମ୍ବା ଧର୍ମଛଡ଼ା ବୋଲି ମନେ କରିବେ ନାହିଁ । ମୁଁ କୌଣସି ଧର୍ମର ବିରୋଧାଚରଣ କରୁ ନାହିଁ— ଈଶ୍ୱର-ବିଶ୍ୱାସକୁ ଅସ୍ୱୀକାର କରୁ ନାହିଁ । ବ୍ୟକ୍ତି ଚରିତ୍ରର ପରାକାଷ୍ଠା ପାଇଁ ଏବଂ ମାନବ ସଭ୍ୟତାର ଅଭିବୃଦ୍ଧି ପାଇଁ ଧର୍ମ ଓ ଈଶ୍ୱର-ବିଶ୍ୱାସର ଆବଶ୍ୟକତା ରହିଛି ବୋଲି ମୋର ଦୃଢ଼ ମତ । ବିଶେଷତଃ ଏହି ବୈଜ୍ଞାନିକ ପ୍ରଗତି ଓ ବସ୍ତୁତନ୍ତ୍ର-ପ୍ରଧାନ ଯୁଗରେ ମାନବ ଜାତିର ନୈତିକ ଶକ୍ତି ସଂରକ୍ଷଣ ତଥା ଆଚରଣ-ପଦ୍ଧତିର ନିୟନ୍ତ୍ରଣରେ ଏହାର ଉପଯୋଗିତା ଯଥେଷ୍ଟ । ସେଇଥିପାଇଁ ବୋଧହୁଏ ବିଖ୍ୟାତ ବୈଜ୍ଞାନିକ ଆଇବର୍ଟ୍ ଆଇନ୍‌ଷ୍ଟାଇନ୍ (୧୮୭୯—୧୯୫୫) ନିଜର 'ଆଉଟ୍ ଅବ୍ ମାଇଁ ଲେଟର୍ ଇୟର୍‌ସ୍' ଗ୍ରନ୍ଥରେ ସ୍ପଷ୍ଟ ଘୋଷଣା କରିଛନ୍ତି—"ଧର୍ମ ବ୍ୟତିରେକେ ବିଜ୍ଞାନ ପଙ୍ଗୁ ଏବଂ ବିଜ୍ଞାନ ବ୍ୟତିରେକେ ଧର୍ମ ଅନ୍ଧ ।" ବସ୍ତୁତଃ ଏହି ଧର୍ମ ଅନ୍ଧବିଶ୍ୱାସ ଓ କୁସଂସ୍କାରରୁ ମୁକ୍ତ, ଏବଂ ମହତ୍ ଓ ଶୋଭନୀୟ ଜୀବନଚର୍ଯ୍ୟାରେ ଈଶ୍ୱର ବୋଲି ଆମକୁ ସ୍ୱୀକାର କରିବାକୁ ହେବ । ଏହି ଅବସ୍ଥାରେ ପୃଥିବୀର ବିଭିନ୍ନ ଧର୍ମ ମଣିଷ-ସମାଜର ଉପଯୋଗରେ ଯେ ନ ଲାଗିଛି, କିମ୍ବା ମାନବ ଜାତିର ଯେ ସହାୟକ ନ ହୋଇଛି, ତାହା କହି ହେବ ନାହିଁ । ଦୋଷ, ଆଦୌ ଧର୍ମର ନୁହେଁ । ପ୍ରତ୍ୟେକ ଧର୍ମର ମୂଳ ନୀତିଗୁଡ଼ିକ ମହତ୍ ଓ ଆଦର୍ଶସ୍ଥାନୀୟ । ସବୁ ଦୋଷତ୍ରୁଟି

ବୋଧହୁଏ ଧର୍ମାବଲମ୍ବୀମାନଙ୍କର । ଧର୍ମର ମୂଳନୀତିଗୁଡ଼ିକ ରହିଲା ସେଣେ ଧର୍ମଗ୍ରନ୍ଥ ପୃଷ୍ଠାରେ ; ଏଣେ ଧର୍ମାବଲମ୍ବୀମାନେ ଚାଲିଲେ ନିଜ ନିଜ ବାଟରେ । ସେମାନେ ଯଦି ଜୀବନଚର୍ଯ୍ୟାରେ ତାହା ଅନୁସରଣ ନ କଲେ, କିମ୍ବା ଭ୍ରମାତ୍ମକ ଭାବରେ ଅନୁସରଣ କଲେ, ତାହା ହେଲେ କାହାକୁ କହିବା ?— କପାଳରେ ସିନା କର ବାଡ଼ିବା ! କିନ୍ତୁ କପାଳରେ କର ବାଡ଼ିବା ତ ଭାଗ୍ୟବାଦୀ ବା ନାଗର, ନିରୁପାୟ ବ୍ୟକ୍ତିମାନଙ୍କର କାର୍ଯ୍ୟ ! ଆସନ୍ତୁ, ଆମ୍ଭେମାନେ ସମସ୍ତେ ନିଜ ନିଜ ଧର୍ମର ମୂଳନୀତିଗୁଡ଼ିକ ବିଶ୍ୱସ୍ତ ଭାବରେ ଅନୁସରଣ କରି ବାଟ ଚାଲିବା । ମତ ବା ପଥ ଭିନ୍ନ ଭିନ୍ନ ହୋଇପାରେ, କିନ୍ତୁ ଆମ୍ଭମାନଙ୍କର ଲକ୍ଷ୍ୟ ଯେ ଅଭିନ୍ନ !

## ପୂଜାରୀ

ଅଳ୍ପ କେତେବର୍ଷ ତଳେ କଟକ ସହରରେ ଏକ ସଙ୍ଗୀତ-ସମାରୋହରେ ଉପସ୍ଥିତ ଥିଲି । ରାଜ୍ୟର କେତେକ ନାମଜ୍ୟାଦା ଗାୟକ-ଗାୟିକା ସେହି ସମାରୋହରେ ଅଂଶ ଗ୍ରହଣ କରିଥିଲେ । ଜଣେ ଯୁବତୀ ଗାୟିକା ମୁଗ୍ଧ-ବିହ୍ୱଳ ହୋଇ ଗାଇଲେ—

ଜଗନ୍ନାଥ ହେ, କିଛି ମାଗୁ ନାହିଁ ତୋତେ ।<br>
ଧନ ମାଗୁ ନାହିଁ, ଜନ ମାଗୁ ନାହିଁ<br>
ମାଗୁଛି ଶରଧା ବାଲିରୁ ହାତେ ॥

ସମୁଦାୟ ଅନୁଷ୍ଠାନଟି ମୋତେ ହାସ୍ୟକର ବୋଧ ହେଲା । ଗାୟିକାଙ୍କୁ ମୁଁ ଭଲ ଭାବରେ ଜାଣେ । ରାଜପ୍ରାସାଦ ଭଳି ଗୃହରେ ସେ ରହନ୍ତି, ବେଶ-ପ୍ରସାଧନରେ ପ୍ରଚୁର ଟଙ୍କା ଖର୍ଚ୍ଚ କରନ୍ତି । ଗୋଡ଼ ତାଙ୍କର ଭୂଇଁରେ ଲାଗେ ନା—ସବୁବେଳେ ସେ କାର୍ ବା ଟ୍ୟାକ୍ସିରେ ବୁଲନ୍ତି । ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକୁ ଗୀତ ଗାଇବାକୁ ଗଲେ, ଗଡ଼ିକେ ହାତୀଏ ଟଙ୍କା ଦାବୀ କରନ୍ତି । ଅଥଚ କିପରି ସେ ଆନ୍ତରିକତା ସହ ଗାଇ ପାରୁଛନ୍ତି—ଧନ ମାଗୁ ନାହିଁ, ଜନ ମାଗୁ ନାହିଁ, ମାଗୁଛି ଶରଧା ବାଲିରୁ ହାତେ ? ଶ୍ରୀକ୍ଷେତ୍ରରେ ଶରଧା ବାଲିରେ ସେ କେବେ ଯୋତାହୀନ ପାଦରେ ଚାଲିଥିବେ କି ନା, ସନ୍ଦେହ । ତେବେ କାହିଁକି ତାଙ୍କର ଏ ଛଳନା, କପଟାଚାର ? ଗାୟନ କଣ ତାଙ୍କର

ଜୀବନ ନୁହେଁ ? ସଙ୍ଗୀତ କଣ ତାଙ୍କର ଅନ୍ତଃସ୍ଥର ନୁହେଁ ? ଏହି ବୟସରେ ସେ ପ୍ରେମର ସଙ୍ଗୀତ ବା ଜାତୀୟ ସଙ୍ଗୀତ ଗାନ କରିଥିଲେ, କେଡ଼େ ସୁନ୍ଦର ଓ ସ୍ୱାଭାବିକ ହୋଇ ନ ଥାନ୍ତା ? ଓଡ଼ିଆରେ ପ୍ରେମ-ସଙ୍ଗୀତ ବା ଜାତୀୟ ସଙ୍ଗୀତର ଯେ ଅଭାବ ଅଛି, ତାହା ନୁହେଁ । ହୁଏତ ଏହିପରି ନିରମିଷ ସଙ୍ଗୀତ ଗାନ କରିବା ପାଇଁ ତାଙ୍କର ଅଭିଭାବକଙ୍କର ନିର୍ଦ୍ଦେଶ ! ଯାହାହେଉ, ଗାୟିକାଙ୍କର ରୀତିନୀତି, ଗ୍ଲାଲିଚଳଣି ସହିତ ଗୀତ ଗାଇବାଟା ମୋତେ ବେଶ୍ ଖାପଛଡ଼ା ମନେ ହେଲା ।

ମୋର କ୍ଷୋଭ ଓ ବିରକ୍ତି ସେଦିନ ଚରମ ସୀମାରେ ଉପନୀତ ହେଲା, ଯେତେବେଳେ ଜଣେ ମଧ୍ୟବୟସ ଗାୟକ ଗାଇବାରେ ଲାଗିଲେ—

ଦୀନବନ୍ଧୁ, ଏହି ଅଛି ଗୁହାରୀରେ ।
ଶ୍ରୀରଙ୍ଗା ଚରଣ ସେବାରେ ମୋ ମନ
ରହିଥାଉ ନିରନ୍ତରେ ॥
ଦାନା କନା ପଛେ ମନା ହେଉ ମୋତେ
ନୀଳଚକ୍ର ବାନା ଚାହିଁ
ସୁଖୀ ହେଉଥିବି ଅଖିଳପତି ହେ
ନିର୍ଦ୍ଦୟ ହୋଇବ ନାହିଁ ॥

ଏହି ଗାୟକ-ବନ୍ଧୁ ମଧ୍ୟ ମୋର ପରିଚିତ । ନିଜର ତଥା ନିଜ ପରିବାରର ଦାନା-କନା ବ୍ୟବସ୍ଥା ଉଦ୍ଦେଶ୍ୟରେ ସକାଳ ଆଠଟାରୁ ରାତି ଆଠଟା ଯାଏଁ ସେ ସହରର ବିଭିନ୍ନ ସ୍ଥାନରେ ଟିଉସନ୍ କରନ୍ତି— ପିଲାମାନଙ୍କୁ ନାଚ ଗୀତ ଶିଖାନ୍ତି । କେବଳ ନୀଳଚକ୍ର ବାନାକୁ ଚାହିଁ ସେ କଦାପି ସୁଖୀ ହୋଇ ପାରିବେ ନାହିଁ— ଏ କଥା ମୁଁ ଭଲ ଭାବରେ ଜାଣେ । ସବୁଠାରୁ ମଜା କଥା ହେଉଛି— ସାଧାରଣ ଅର୍ଥରେ ସେ ଈଶ୍ୱରବିଶ୍ୱାସୀ ନୁହନ୍ତି, ତାଙ୍କ ସହିତ ଆଳାପ-ଆଲୋଚନା କରି ମୁଁ ବୁଝିଛି—ସେ ସଂଶୟବାଦୀ । ତେବେ କିପରି ସେ ଭାବ-ପ୍ରବଣ ହୋଇ ଏପରି ଗୀତ ଗାଇ ପାରୁଛନ୍ତି ? ତାଙ୍କଠାରେ ମଧ୍ୟ ଛଳନା ଓ କପଟାଚାରର ଗନ୍ଧ ପାଇଲି ।

ଆମର କେତେକ ଭକ୍ତି-ଗୀତିକାରେ ବଡ଼ ଗ୍ଲାନିକାରକ, ଅମର୍ଯ୍ୟାଦାକର କଥା ବୋଲା ଯାଇଥିବାର ଲକ୍ଷ୍ୟ କରିଛି । କବିମାନେ କେଉଁ ପରିସ୍ଥିତିରେ

କିପରି ଏହି ଗୀତସବୁ ରଚନା କରିଥିଲେ କେଜାଣି, ଏବେ ପରିବର୍ତ୍ତିତ ଅବସ୍ଥାରେ ଗାୟକ-ଗାୟିକାଙ୍କ କଣ୍ଠରେ ତାହା ସଙ୍ଗତ ଓ ଶୋଭନୀୟ ମନେ ହେଉ ନାହିଁ । ଏବେ ଯେତେବେଳେ ଶୁଣୁଛି—

ମଣିମା ଶୁଣିମା ହେଉ ଗରିବ ଡାକ
ନିରକ୍ଷ ଜନକୁ ରଖ ପଙ୍କଜମୁଖ ।।

କିମ୍ବା—

ଭୁଜ ତଳେ ମୋତେ ରଖ ମହାବାହୁ
ବାହୁ ତଳେ ମୋତେ ରଖ ।
ଭସି ଯାଉଅଛି ଏ ଭବ ସାଗରେ
ରକ୍ଷା କର ମହାବାହୁ ।।—

ସେତେବେଳେ ବିଂଶ ଶତାବ୍ଦୀର ଶେଷ ଭାଗରେ ମହାକାଶ ଅଭିଯାନରେ ବାହାରିଥିବା ମଣିଷର ସକଳ ଶକ୍ତି-ସାମର୍ଥ୍ୟ ତୁଚ୍ଛ, ମୂଲ୍ୟହୀନ ବୋଲି ଜଣା ପଡ଼ୁଛି । କାହିଁକି ଏ ବିକଳ ଭାବ ? ମଣିଷ କଣ ସତରେ ଆଜି ଏତେ ଦୁର୍ବଳ, ଅସହାୟ, ଶକ୍ତିହୀନ ? ତାକୁ କଣ ସବୁବେଳେ ଜଣେ କିଏ ଉପରୁ ଗଣ୍ଡ ଘୋଡ଼ାଇ ରଖିଥିବ ?—ନୋହିଲେ ତଳୁ ଜଣେ କିଏ ଟେକି ଧରିଥିବ ? ମାନବୀୟ ଶକ୍ତି, ସାମର୍ଥ୍ୟ, କ୍ଷମତା ବୋଲି କଣ କିଛି ନାହିଁ ? ଧର୍ମ ଓ ଈଶ୍ୱର ଆମର ଆଉ କିଛି ନ କରି, ସେହି ମାନବୀୟ ଶକ୍ତି-ସାମର୍ଥ୍ୟର ଜାଗରଣ ତଥା ଚୂଡ଼ାନ୍ତ ବିକାଶରେ ଆମକୁ ଏବେ ସାହାଯ୍ୟ କରନ୍ତେ ହେଲେ !

ସେହିଭଳି ଏକ ଧର୍ମ ଏବଂ ଈଶ୍ୱର ଅନୁସନ୍ଧାନରେ ମୁଁ ସେଦିନ ସଙ୍ଗୀତ-ସମାବେଶ ଛାଡ଼ି ବାହାରି ଆସିଲି ।



### ଆଲୋଚନା ପାଇଁ

## ସହାୟକ ଓ ଆକର-ରଚନାବଳୀ


୧ । ଓଡ଼ିଶାର ସସ୍କୃତି ଓ ଇତିହାସରେ ଯାଜପୁର (ପ୍ରଥମ ବିରଜା ବକ୍ତୃତା-ମାଳା)–ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନରସିଂହ ଚୌଧୁରୀ କଲେଜ, ଯାଜପୁର (୧୯୭୩) ।

୨ । 'ଡଗର'–ଡିସେମ୍ବର, ୧୯୫୯ ସଂଖ୍ୟା ।

୩ । ମୋଗଲ ତାମସା–ଭଗବତ ପ୍ରେସ୍, କଟକ (୧୯୬୬) ।

୪ । 'କୋଣାର୍କ'— ପ୍ରବନ୍ଧ ବିଶେଷାଙ୍କ (୧୯୭୫) ଏବଂ ଷଡ଼ବିଂଶ ସଂଖ୍ୟା (୧୯୭୮)– ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।

୫ । ଶ୍ରୀ ଜଗନ୍ନାଥ ସଂସ୍କୃତି—ସଂପାଦନା ଓଡ଼ିଶା କଲ୍‌ଚରାଲ ଫୋରମ, ଭୁବନେଶ୍ୱର, ପ୍ରକାଶକ—ସାଥି ମହଲ, କଟକ-୨ (୧୯୭୮) ।

୬ । ଖୁର୍ଦ୍ଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର, ଶାରଦା ପ୍ରେସ୍, ଭୁବନେଶ୍ୱର (୧୯୬୯) ।

୭ । ସମ୍ବଲପୁର ଯାତ୍ରା—ଅନୁବାଦକ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଉତ୍କଳ ବିଶ୍ୱବିଦ୍ୟାଳୟ (୧୯୫୫) ।

୮ । ଓଡ଼ିଶା ଇତିହାସ—ଡକ୍ଟର ହରେକୃଷ୍ଣ ମହତାବ୍, ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ (୧୯୪୮) ।

୯ । ଓଡ଼ିଆ ସାହିତ୍ୟ ଓ ସମାଜ—ଡକ୍ଟର ମାୟାଧର ମାନସିଂହ, ଭାରତୀ ବିହାର, କଟକ (୧୯୫୧) ।

୧୦ । ବିବିଧ ପ୍ରସଙ୍ଗ—ଶ୍ରୀ ମୋହିନୀ ମୋହନ ସେନାପତି, ନବଭାରତ ପ୍ରେସ, କଟକ (୧୯୩୯) ।

୧୧ । ଖ୍ରୀଷ୍ଟୀୟ ମଣ୍ଡଳୀର ଇତିହାସ—ଶ୍ରୀ ପ୍ରଫୁଲ୍ଲ କୁମାର ପାତ୍ର, ଓଡ଼ିଶା ମିସନ୍ ପ୍ରେସ୍, କଟକ (୧୯୪୩) ।

୧୨ । ବାଂଲା ସାହିତ୍ୟେ ଇଉରୋପୀୟ ଲେଖକ—ସବିତା ଚଟ୍ଟୋପାଧ୍ୟାୟ, ଫାର୍ମା କେ: ଏଲ୍: ମୁଖୋପାଧ୍ୟାୟ, କଲିକତା (୧୯୭୨) ।

୧୩ । ଭାରତୀୟ ମଧ୍ୟଯୁଗେ ସାଧନାର ଧାରା—ଶ୍ରୀ କ୍ଷିତିମୋହନ ସେନ, କଲିକତା ବିଶ୍ୱବିଦ୍ୟାଳୟ (୧୯୩୦) ।

୧୪ । କାଲିକଟ୍ ଥେକେ ପଲାସୀ—ଶ୍ରୀ ସତୀନ୍ଦ୍ରମୋହନ ଚଟାର୍ଜୀ, ସାହିତ୍ୟ ସଂସଦ, କଲିକତା (୧୯୬୯) ।

୧୫ । ବେଦ ଓ କୋରାନେର୍ ସାଦୃଶ୍ୟ—ଶ୍ରୀ ରବୀନ୍ଦ୍ର କୁମାର ସିଦ୍ଧାନ୍ତ ଶାସ୍ତ୍ରୀ, ସଂସ୍କୃତ ପୁସ୍ତକ ଭଣ୍ଡାର, କଲିକତା (୧୯୫୫) ।

୧୬ । ଭକ୍ତକବି ମଧୁସୂଦନ ରାଓ ଓ ଉତ୍କଳେ ନବଯୁଗ—ଶ୍ରୀମତୀ ଅବନ୍ତୀ ଦେବୀ, ଜିଜ୍ଞାସା, କଲିକତା (୧୯୬୩) ।

17. Chronology of the Bhauma-Karas and the Soma Vamsis of Orissa—Dr. K. C. Panigrahi, M.L.J. Press, Madras (1961)

18. Proceedings of Orissa History Congress, Berhampur (1977)

19. Prachi Valley—Ed. by P. K. Ray, Orissa State Archaeology, Bhubaneswar (1975)

20. History of Orissa, Vol. I—Dr. N. K. Sahu, Utkal University, Bhubaneswar (1964)

21. Hinduism—K.M. Sen, Penguin Books, London (1963)

22. Medieval Indian Culture—A. L. Srivastava, Shivala Agrwala & Co, Agra (1971)

23. British Paramountcy and Indian Renaissance—Part II, Bharatiya Vidya-Bhavan, Bombay (1965)

24. Kings without a Kingdom—Hermann Kulke, South Asia, Heidelberg (1974)

25. Begone Godmen—Dr. Abraham T. Kavoor, Jaico Press Pvt. Ltd., Bombay (1977)

26. An Historian's Approach to Religion—Arnold Toynbee, Oxford University Press, London (1956)

27. International Encyclopaedia of the Social Sciences, Vol. 13—The Macmillan Co. and Free Press, New York (1972)

●

॥ ୭ ॥

# ଉଚ୍ଚ ଶିକ୍ଷାର ଉଚ୍ଚବାଚ

୧୧. ୫, ୧୯୯୦ ତାରିଖରେ ଗଞ୍ଜାମ ଜିଲ୍ଲା ପାରଳାଖେମୁଣ୍ଡିସ୍ଥ ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜର ‘ଗଜପତି ବକ୍ତୃତାମାଳାରେ’ରେ ପ୍ରଦତ୍ତ ସପ୍ତମ ଅଭିଭାଷଣ ।

*"If India is to confront the confusion of our time, she must turn for guidance, not to those who are lost in the mere exigencies of the passing hour, but to her men of letters, and men of science to her poets and artists, to her discoverers and inventors. These intellectual pioneers of civilization are to be found and trained in the Universities, which are the sanctuaries of the inner life of the nation."*

**—The Report of the University Education Commission (Radhakrishna Commission), Govt. of India Press, Simla (1950)—Page 33**

# ଉଚ୍ଚ ଶିକ୍ଷାର ଉଚ୍ଚବାଚ

ସୁଧୀ ସଜ୍ଜନ-ମଣ୍ଡଳୀ, ଏହି ବକ୍ତୃତାମାଳାକୁ ଆପଣମାନେ ଯେଉଁ ପୁରୁଷୋତ୍ତମଙ୍କର ପବିତ୍ର ସ୍ମୃତି-ବିଜଡ଼ିତ କରିଛନ୍ତି, ଆଧୁନିକ ଓଡ଼ିଶାର ଅନ୍ୟତମ ନିର୍ମାତା ସେହି କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଉଦ୍ଦେଶ୍ୟରେ ମୁଁ ପ୍ରଥମେ ଅନ୍ତରର ଗଭୀର ପ୍ରୀତି ଓ ଶ୍ରଦ୍ଧା ନିବେଦନ କରୁଛି । ଶ୍ରଦ୍ଧା ନିବେଦନ କରୁଛି ମଧ୍ୟ ଏହି ଉଚ୍ଚ ଶିକ୍ଷାୟତନର ପ୍ରତିଷ୍ଠାତା ସଂସ୍କୃତିପ୍ରେମୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଉଦ୍ଦେଶ୍ୟରେ । ପ୍ରାୟ ଶହେ ବର୍ଷ ତଳେ ବ୍ୟାସକବି ଫକୀର ମୋହନ ସେନାପତି ଆପଣା 'ଉତ୍କଳ ଭ୍ରମଣଂ'ରେ ମହେନ୍ଦ୍ର ତନୟା-ସେବିତ ଏହି ଶାନ୍ତ ସୁନ୍ଦର ଭୂଖଣ୍ଡ ବିଷୟରେ ଲେଖିଥିଲେ—

ଓଡ଼ିଆ ଦକ୍ଷିଣ ସୀମା ପାରଳା ଖିମଡ଼ି
ଧନେ ମାନେ କିଏ ଥାଉ ଅଛି ତାଙ୍କୁ ବଢ଼ି ?
କବିତ୍ୱ ଗୌରବ ସ୍ଥାନ ନ ଦେଖେଁ ସେପରି
ଗାଉଥିଲେ ବସି ଗୀତ ଯହିଁ ଗୌରହରି ।

ତାଙ୍କର ଏହି ପ୍ରୀତିପୂର୍ଣ୍ଣ ପ୍ରଶଂସା-ସୂଚକ ଉକ୍ତି ଚଳିତ ଶତାବ୍ଦୀର ଆରମ୍ଭରେ ପୁଣି କବିଶେଖର ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରା ସମର୍ଥିତ ଓ ପରିପୁଷ୍ଟ ହୋଇଥିଲା । ପ୍ରାକୃତିକ ଉତ୍କଳର ଏହି ସମୃଦ୍ଧ ଅଞ୍ଚଳକୁ 'ପାରିଳା' (ପାରଳା < ପାରିଲା < ପ୍ରବଳ) ଲୋକମାନଙ୍କର ସ୍ଥାନ ଭାବରେ କବିଶେଖର ଚିନ୍ତାମଣି 'ପୁଣ୍ୟପୀଠ' ଅଭିଧାରେ ଚିହ୍ନିତ କରିଥିଲେ । ଶକ୍ତି-ସାହସରେ, ଶିକ୍ଷା-ଦୀକ୍ଷାରେ, ସାହିତ୍ୟ-ସଙ୍ଗୀତରେ, ଧର୍ମ ସାଧନାରେ ଓ ଜ୍ୟୋତିଷ ଚର୍ଚ୍ଚାରେ ପାରଙ୍ଗମ ଥିବାରୁ ପାରଳାଖେମୁଣ୍ଡି ବାସ୍ତବିକ୍ ଏକ ପୁଣ୍ୟପୀଠ । ଏହି ପୁଣ୍ୟ ପୀଠରେ ଆପଣମାନଙ୍କ ସହିତ କିଛି ଭାବ ଆଦାନ ପ୍ରଦାନ କରିବା ପାଇଁ ଆଜି ଉପସ୍ଥିତ ହୋଇ ପାରିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି ।

କଲେଜ୍ ଅଧ୍ୟକ୍ଷ—ବନ୍ଧୁ ମାରେଇ ରାଧାକୃଷ୍ଣନ୍ ଏବଂ ଅଧ୍ୟାପକ ଡକ୍ଟର ହରିହର କାନୁନ୍‌ଗୋ ଏହି ବକ୍ତୃତା ପ୍ରଦାନ କରିବା ପାଇଁ ଅନୁରୋଧ କଲାବେଳେ ଅତି ଉଦାର ଚିତ୍ତରେ ବକ୍ତୃତାର ବିଷୟ ନିର୍ବାଚନର ସ୍ୱାଧୀନତା ମୋତେ ପ୍ରଦାନ କରିଥିଲେ । ସେ ଦୁହେଁ ଇଂରାଜୀ ଓ ଓଡ଼ିଆ ସାହିତ୍ୟର ଅଧ୍ୟୟନ ଅଧ୍ୟାପନା କରନ୍ତି । ସାହିତ୍ୟ-କର୍ମ ମଧ୍ୟ ମୋର ଜୀବନ ଓ ଜୀବିକା—ଉଭୟ । ତେଣୁ ସେମାନେ ଆଶା କରୁଥିଲେ—ସାହିତ୍ୟର କୌଣସି ଏକ ପ୍ରସଙ୍ଗ ମୁଁ ବକ୍ତୃତାର ବିଷୟ ରୂପେ ନିର୍ବାଚନ କରିବି । କିନ୍ତୁ ଏହି ଉଚ୍ଚଶିକ୍ଷା ବିଷୟ ବସ୍ତୁ ମୁଁ ବାଛିନେଲି—ସାହିତ୍ୟ ଚର୍ଚ୍ଚାଠାରୁ ଉଚ୍ଚଶିକ୍ଷାର ଚର୍ଚ୍ଚାକୁ ଅଗ୍ରାଧିକାର ଦେଲି । ତାହାର କାରଣ ହେଉଛି—ସମ୍ପ୍ରତି ଆମ ରାଜ୍ୟରେ ଉଚ୍ଚ ଶିକ୍ଷାର ଯେଉଁ ରୀତି ଓ ଗତି, ସେ ସଂପର୍କରେ ବିଶେଷ ଆଲୋଚନା ଚର୍ଚ୍ଚା ହେଉ ନାହିଁ । ଯାହା ଯେଉଁଠି ଆଲୋଚନା ହେଉଛି, ତାହା ମୁଖ୍ୟତଃ ଏହି ଶିକ୍ଷା କ୍ଷେତ୍ରର ବୃତ୍ତି-ସମ୍ବନ୍ଧୀୟ ବ୍ୟାପାର ନେଇ—ଅଧିବିଦ୍ୟା ଓ ପରମାର୍ଥ ଦିଗ ନେଇ ନୁହେଁ । ଗତ ୩୫ ବର୍ଷ କାଳ ନିରବଚ୍ଛିନ୍ନ ଭାବରେ ଉଚ୍ଚ ଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରି ମୁଁ ଏହି ଶିକ୍ଷାର ନିଷ୍ଫଳତା ଓ ଅଧୋଗତି ଅତି ଦୁଃଖର ସହିତ ଲକ୍ଷ୍ୟ କରୁଛି । ଉଚ୍ଚଶିକ୍ଷାରୁ ଆମର ଲିପ୍‌ସା ବା ପ୍ରତ୍ୟାଶା ଏବେ ଏତେ ସଂକୀର୍ଣ୍ଣ ଓ ସଂକୁଚିତ ହୋଇଯାଇଛି ଯେ—କେବଳ ମାତ୍ର ଡିଗ୍ରୀ-ଡିପ୍ଲୋମା ଲାଭ ପୂର୍ବକ କୌଣସି ଗୋଟାଏ ଚାକିରୀ ବା କେଉଁଠି ଏକ କର୍ମନିଯୁକ୍ତିରେ ସହାୟକ ହେବା ଅତିରିକ୍ତ ଉଚ୍ଚଶିକ୍ଷାର ମହତ୍ତର ଓ ଅଧିକ ସ୍ପୃହଣୀୟ ଉଦ୍ଦେଶ୍ୟ ନେଇ ଆମେ ପ୍ରାୟ ଚିନ୍ତା କରିପାରୁ ନାହୁଁ । ଉଚ୍ଚଶିକ୍ଷା ପ୍ରତି କେବଳ ଏହି ବୈଷୟିକ ବା ବ୍ୟାବହାରିକ ମୂଲ୍ୟ ଆରୋପ ଆମର ପ୍ରଭୂତ କ୍ଷତି କରିସାରିଛି । ହୁଏତ ସେଇଥିପାଇଁ ବର୍ତ୍ତମାନ ବିଶ୍ୱବିଦ୍ୟାଳୟ ଡିଗ୍ରୀଡିପ୍ଲୋମା ସହିତ କର୍ମନିଯୁକ୍ତିର ସଂପର୍କ ଛିନ୍ନ କରିବାର ପ୍ରଶ୍ନ ଉଠିଲାଣି । ଉଚ୍ଚଶିକ୍ଷାର ଏହିସବୁ ଗମ୍ଭୀର ଓ ଗୁରୁତ୍ୱପୂର୍ଣ୍ଣ ବିଷୟରେ କେଉଁଠି ପୁଙ୍ଖାନୁପୁଙ୍ଖ ବିଚାର-ଆଲୋଚନା ହେଉଥିବାର ଜଣାଯାଉ ନାହିଁ । କେତେକ ଦୂରଦୃଷ୍ଟି-ସମ୍ପନ୍ନ ସଚେତନ ବ୍ୟକ୍ତି ଏ କଥା ହୃଦୟଙ୍ଗମ କରୁଥିଲେ ହେଁ ହୁରିହାଲା କରୁ ନାହାନ୍ତି—ମର୍ମେ ମର୍ମେ ଉପଲବ୍‌ଧି କରୁଥିଲେ ହେଁ ଠିକ୍ ସ୍ଥାନରେ ଓ ଠିକଣା ବାଟରେ ଉପସ୍ଥାପନ କରିପାରୁ ନାହାନ୍ତି । କେହି କେହି ନିଜ ନିଜ

ଭିତରେ ଏ ସଂପର୍କରେ ତୁନି ତୁନି କଥାବାର୍ତ୍ତା କହୁଛନ୍ତି, ତାକ ପ୍ରକାରରେ କିଛି କହିବାକୁ ଭରସି ପାରୁ ନାହାନ୍ତି । ତେଣୁ ଆଜି ଆପଣମାନଙ୍କ ସମକ୍ଷରେ ମୋର ଏହି ଉଚ୍ଚଶିକ୍ଷାର ଉଚ୍ଚବାଚ ! ଏହି ଉଚ୍ଚବାଚ କେତେକଙ୍କ ପକ୍ଷରେ ଅପ୍ରୀତିକର ହୋଇପାରେ—କାହାକୁ ହୁଏତ ଆଘାତ କରିପାରେ । ସେଥିପାଇଁ ପ୍ରଥମରୁ ମୁଁ ଆପଣମାନଙ୍କ ନିକଟରେ କ୍ଷମାପ୍ରାର୍ଥନା କରିନେଉଛି ।

ଏହି ଆଲୋଚନାରେ ଉଚ୍ଚ ଶିକ୍ଷା ବୋଇଲେ, ହାଇସ୍କୁଲର ମାଧ୍ୟମିକ ଶିକ୍ଷା ପରବର୍ତ୍ତୀ ଅବସ୍ଥାର ଶିକ୍ଷାକୁ ହିଁ ଲକ୍ଷ୍ୟ କରାଯାଉଛି—ଯଦିଚ ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସମସ୍ତ ଶିକ୍ଷା ବ୍ୟବସ୍ଥା ଗୋଟାଏ ସୋପାନ-ଶ୍ରେଣୀ ସଦୃଶ ଅଖଣ୍ଡ ଓ ପୂର୍ଣ୍ଣାଙ୍ଗ ଏକକ ଥିବା ବିଷୟରେ ମୁଁ ସଚେତନ । କୃଷି, ଚିକିତ୍ସା, ଆଇନ୍, ଇଞ୍ଜିନିୟରିଂ ଆଦି ବୈଷୟିକ ବୃତ୍ତିମୂଳକ ଉଚ୍ଚଶିକ୍ଷାକୁ ଏହି ଆଲୋଚନାରେ ପ୍ରାୟ ଅନ୍ତର୍ଭୁକ୍ତ କରାଯାଇ ନାହିଁ ; ମୁଖ୍ୟତଃ କଳା, ବିଜ୍ଞାନ, ବାଣିଜ୍ୟାଦି ବିଷୟକ ସାଧାରଣ ଶିକ୍ଷା ବିଷୟ ହିଁ ଆଲୋଚିତ ହୋଇଛି । ଉକ୍ତ ଉଚ୍ଚ ଶିକ୍ଷାର ବିଭିନ୍ନ ଅନାଲୋଚିତ ଓ ସ୍ୱଳ୍ପାଲୋଚିତ ଦିଗ ଆପଣମାନଙ୍କର ବିବେଚା ବିଚାର ନିମିତ୍ତ ମୁଁ ଏଠାରେ ଉପସ୍ଥାପନ କରୁଛି ।

## ଶିକ୍ଷାର ଉଦ୍ଦେଶ୍ୟ ଓ ଅଭିମୁଖ୍ୟ

ସ୍ୱାଧୀନତା ପରେ ଆମର ବିଶ୍ୱବିଦ୍ୟାଳୟ ସଂଖ୍ୟା ବଢ଼ିଛି—କଲେଜ ସଂଖ୍ୟା ବହୁଗୁଣିତ ହୋଇଛି । କିନ୍ତୁ ସେହି ଅନୁପାତରେ ଉଚ୍ଚଶିକ୍ଷାର ମାନବୃଦ୍ଧି ଘଟିଛି କି ? ଆଶାନୁରୂପ ଉନ୍ନତି ସାଧିତ ହୋଇଛି କି ? ଆମର ଜନସମାଜ ପକ୍ଷରେ ଉଚ୍ଚ ଶିକ୍ଷା କେତେ ଦୂର ଉପଯୋଗୀ ହୋଇପାରିଛି ? ଶିକ୍ଷାର କି ଉଦ୍ଦେଶ୍ୟ ଏହା ଚରିତାର୍ଥ କରିଛି ? ପ୍ରତ୍ୟେକ ଶିକ୍ଷିତ, ସଚେତନ ନାଗରିକଙ୍କ ମନରେ ଏବେ ଏହି ପ୍ରଶ୍ନବାଚୀ—ଘୁରିଆଡ଼େ ଜିଜ୍ଞାସାବାଦ । ବର୍ତ୍ତମାନ ଠିକ୍ ସମୟ ଆସିଛି, ଆମକୁ ଏହି ସବୁ ପ୍ରଶ୍ନର ଉତ୍ତର ଅନୁସନ୍ଧାନ କରିବାକୁ ହେବ—ସକଳ ଜିଜ୍ଞାସା ଓ କୌତୂହଳର ମୁକାବିଲା କରିବାକୁ ପଡ଼ିବ ।

କଲେଜ୍ ଓ ବିଶ୍ୱବିଦ୍ୟାଳୟ ଭଳି ଉଚ୍ଚଶିକ୍ଷାନୁଷ୍ଠାନ ଗୁଡ଼ିକ, ଜ୍ଞାନ-ବିଜ୍ଞାନର ଆଲୋକ-ଶିଖା ପ୍ରଜ୍ଜ୍ୱଳିତ କରି ରଖିବା ଏବଂ ସେହି ବୃହତ୍ ଆଲୋକ-

ଶିଖାରୁ ଗ୍ରହିଆଡ଼େ ସାନ ବଡ଼ ଅନ୍ୟାନ୍ୟ ପ୍ରଦୀପ ଜଳାଇ ଦେବାର ଲକ୍ଷ୍ୟ ସେଥିଁ ପ୍ରତିଷ୍ଠିତ । ଏହି ଜ୍ଞାନ ବିଜ୍ଞାନର ଆଲୋକ ଓ ଭିତ୍ତିପରେ ବ୍ୟକ୍ତି ନିଜକୁ ଉପଯୁକ୍ତ ମଣିଷ କରି ଗଢ଼ିବ – ଗଢ଼ିବ ଶରୀର, ମନ ଓ ଆତ୍ମାରେ । ନିଜ ସମ୍ପର୍କରେ ତଥା ବିଶ୍ୱଜଗତ୍ ସମ୍ପର୍କରେ ମଣିଷର ବୋଧଶକ୍ତି ବଢ଼ାଇବା ଏବଂ ସେହି ବୋଧଶକ୍ତିକୁ ସମଗ୍ର ସମାଜରେ ବିଚ୍ଛୁରିତ କରିବା ସଙ୍ଗେ ସଙ୍ଗେ ମାନବ ଜାତିର ସେବାରେ ବିନିଯୋଗ କରିବା ଉଚ୍ଚ ଶିକ୍ଷାର ଉଦ୍ଦେଶ୍ୟ । ସେଥିସକାଶେ ଉଚ୍ଚଶିକ୍ଷାୟତନ ଗୁଡ଼ିକ ବିଭିନ୍ନ ଚିନ୍ତା, ଭାବଧାରା ଓ ଆଦର୍ଶର କ୍ରୀଡ଼ାଭୂମି ହେବା ଆବଶ୍ୟକ ଏବଂ ଶିକ୍ଷକ ତଥା ଛାତ୍ର-ସମାଜ ସେହି ଭାବଧାରା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ସତ୍ୟର ଅନୁସରଣ କରିବା ଉଚିତ । ଉଚ୍ଚଶିକ୍ଷା ଓ ଶିକ୍ଷାୟତନର ଏହି ଲକ୍ଷ୍ୟ ବା ଉଦ୍ଦେଶ୍ୟ ସମ୍ପର୍କରେ କାହାରି ଦ୍ୱିମତ ଥାଇ ନ ପାରେ । କୋଠାରୀ ଶିକ୍ଷା କମିସନ୍ ରିପୋର୍ଟରେ (୧୯୬୬) ଏ ବିଷୟରେ ମୋଟାମୋଟି ଏଇକଥା ହିଁ ସୂଚାଇ ଦିଆଯାଇଛି (ଏକାଦଶ ପରିଚ୍ଛେଦ ଦ୍ରଷ୍ଟବ୍ୟ) । ଦେଶ ବିଦେଶର ଶିକ୍ଷାବିତ୍ ଓ ଚିନ୍ତା-ନାୟକମାନେ ଉଚ୍ଚ ଶିକ୍ଷା ଓ ଶିକ୍ଷାୟତନ ସଂପର୍କରେ ମଧ୍ୟ ଅନୁରୂପ ଉଚ୍ଚାକାଙ୍‌କ୍ଷା ପୋଷଣ କରିଛନ୍ତି ।

ଏଲାହାବାଦ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଦୀକ୍ଷା ଭାଷଣ ଦେଇ ଥରେ ପଣ୍ଡିତ ଜବାହାରଲାଲ ନେହରୁ କହିଥିଲେ—ମାନବ-ଧର୍ମ, ସହନଶୀଳତା, ପ୍ରଗତି, ନୂଆ ନୂଆ ଭାବଧାରା ପାଇଁ ଅଭିଯାନ ଏବଂ ସତ୍ୟର ଅନୁସନ୍ଧାନ ହେଉଛି ଗୋଟିଏ ବିଶ୍ୱବିଦ୍ୟାଳୟର ନିଦର୍ଶନ । ଉଚ୍ଚତର ଲକ୍ଷ୍ୟରେ ମାନବ ଜାତିର ଅଗ୍ରଗତି ପାଇଁ ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରିବ । ଯଦି ବିଶ୍ୱ-ବିଦ୍ୟାଳୟଗୁଡ଼ିକ ଆଶାନୁରୂପ କର୍ତ୍ତବ୍ୟ ପାଳନ କରନ୍ତି, ତାହାହିଁ ହେବ ରାଷ୍ଟ୍ର ଓ ଜନସମାଜ ପକ୍ଷରେ ମଙ୍ଗଳକର !

ଶିକ୍ଷକ ତଥା ଛାତ୍ର ସମାଜର ଶିକ୍ଷାଦାନ ଓ ଶିକ୍ଷାଗ୍ରହଣ ଜରିଆରେ ସାଧାରଣତଃ ଉଚ୍ଚ ଶିକ୍ଷାର ଏହି ଉଦ୍ଦେଶ୍ୟ ପରିପୂର୍ତ୍ତି ଲାଭ କରିଥାଏ । ପ୍ରଚଳିତ ଥିବା ଜ୍ଞାନ ବିଜ୍ଞାନର ଚର୍ଚ୍ଚା ବା ଅଧ୍ୟୟନ-ଅଧ୍ୟାପନା ଉଚ୍ଚ ଶିକ୍ଷାୟତନର ଏକମାତ୍ର କାର୍ଯ୍ୟ ନୁହେଁ । ପୂର୍ବରୁ ସଞ୍ଚିତ ରହିଥିବା ଜ୍ଞାନ ସମ୍ପଦକୁ କୃପଣର ଭଣ୍ଡାର ପରି କେବଳ ସାଇତି ରଖିବା ଏବଂ ନିଜ ନିଜ ମଧ୍ୟରେ ଆଦାନପ୍ରଦାନ

କରିବା ଅଧ୍ୟାପକ ଓ ଛାତ୍ର ସମାଜର କର୍ତ୍ତବ୍ୟ ନହେଁ । ନୂଆ ନୂଆ ଜ୍ଞାନ-ବିଜ୍ଞାନର ସୃଷ୍ଟି ଓ ପ୍ରବର୍ତ୍ତନ କରିବା ମଧ୍ୟ ସେମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ପ୍ରାକ୍ତନ ଆଲୋକର ନବୀକରଣ ସଙ୍ଗେ ସଙ୍ଗେ ନୂତନ ଆଲୋକର ବିକୀରଣ ମଧ୍ୟ ସେମାନଙ୍କର ଧ୍ୟେୟ । ଅତୀତରେ ଭାରତର ଉଚ୍ଚ ଶିକ୍ଷାନୁଷ୍ଠାନ-ଗୁଡ଼ିକରେ ଏହି ଦୁଇପ୍ରକାର କାର୍ଯ୍ୟ ହିଁ ସମାହିତ ହେଉଥିଲା । ତକ୍ଷଶିଳା, ନାଳନ୍ଦା, ବିକ୍ରମଶୀଳା, ପୁଷ୍ପଗିରି ଆଦି ବିଭିନ୍ନ ଉଚ୍ଚ ଶିକ୍ଷାନୁଷ୍ଠାନ ପୂର୍ବ ପ୍ରଚଳିତ ଜ୍ଞାନ-ବିଜ୍ଞାନର ବଣ୍ଟନ ସଙ୍ଗେ ସଙ୍ଗେ ନବ ନବ ଜ୍ଞାନ-ବିଜ୍ଞାନ ସୃଷ୍ଟିରେ ବରାବର ଉଦ୍‌ଯୋଗୀ ଥିବାର ଇତିହାସ ସାକ୍ଷ୍ୟ ପ୍ରଦାନ କରିଥାଏ । ଭାରତରେ ସେତେବେଳେ ସୃଷ୍ଟି ହୋଇଥିବା ନୂଆ ନୂଆ ଜ୍ଞାନ-ବିଜ୍ଞାନ ଭାରତ ବାହାରକୁ ଯାଇ ଜ୍ଞାନାଲୋକ ଉଦ୍‌ଭାସିତ କରିଥିବାର ପ୍ରମାଣ ମିଳେ । ଚୀନ୍ ଦେଶର ପରିବ୍ରାଜକ ପଣ୍ଡିତ ହୁଏନ୍‌ସାଂ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ନାଳନ୍ଦା ବିହାରରେ ଶିକ୍ଷା ଶେଷ କରି ବାହୁଡ଼ିଗଲାବେଳେ ବାଇଶ ଗୋଟି ଘୋଡ଼ାରେ ଲଦି ଛଅଶହ ସତାବନ ଖଣ୍ଡ ବିଭିନ୍ନ ବିଷୟକ ଭାରତୀୟ ଶାସ୍ତ୍ର ସାଙ୍ଗରେ ସ୍ୱଦେଶକୁ ଘେନି ଯାଇଥିଲେ । ଭାରତ ସେତେବେଳେ ଉଦାର ଦାକ୍ଷିଣ୍ୟର ସହ ଜ୍ଞାନସତ୍ର ଖୋଲି ଦେଇଥିବାର ଜଣାପଡ଼େ ।

ଏବେ ପରିସ୍ଥିତିର କିଭଳି ପରିବର୍ତ୍ତନ ହୋଇଛି, ତାହା ସମସ୍ତେ ଲକ୍ଷ୍ୟ କରୁଥିବେ । ଏକ୍ଷଣି ବାହାରୁ ଜ୍ଞାନ-ବିଜ୍ଞାନର ଗ୍ରନ୍ଥ ଭାରତକୁ ନ ଆସିଲେ, ଏଠାରେ ଆମର ଶିକ୍ଷା-ପ୍ରଦୀପ ପ୍ରଜ୍ୱଳିତ ହୋଇପାରୁ ନାହିଁ । ବିଦେଶରେ ବା ଦେଶାନ୍ତରରେ ସୃଷ୍ଟି ହେଉଥିବା ନବନବ ଜ୍ଞାନ-ବିଜ୍ଞାନ ଉପରେ ଆମକୁ ଏବେ ବରାବର ନିର୍ଭରଶୀଳ ହୋଇ ରହିବାକୁ ପଡ଼ୁଛି । ନବ ନବ ଜ୍ଞାନ ବିଜ୍ଞାନର ସୃଷ୍ଟି ଆମର କାହିଁ ଓ କେତେ ? ବାସ୍ତବିକ୍, ବିଶ୍ୱର ଜ୍ଞାନ-ଭଣ୍ଡାରକୁ ଏବେ ଆମର ଦାନ ଅକିଞ୍ଚିତ୍କର । ପ୍ରାଚୀନ ଭାରତ ବିଶ୍ୱର ଜ୍ଞାନାଗାରକୁ ଯେପରି ସମୃଦ୍ଧ କରି ପାରିଥିଲା, ଏବର ଭାରତ ସେପରି କରିବାରେ ସମର୍ଥ ହୋଇ ନାହିଁ । ପୂର୍ବରୁ ଅନେକେ ଏଥିପାଇଁ ଆମର ଦାସତ୍ୱ ବା ପରାଧୀନତାକୁ ଦାୟୀ କରୁଥିଲେ । ମାତ୍ର ଏବେ ଆଉ କାହାକୁ ଦାୟୀ କରାଯିବ ? ବୟାଳିଶ ବର୍ଷ ହେଲା ଆମେ ସ୍ୱାଧୀନ ହେଲୁଣି । ଏବେ ଆତ୍ମ-ସମୀକ୍ଷା କରିବା ଉଚିତ ହେବ ।

ଉଚ୍ଚ ଶିକ୍ଷା କ୍ଷେତ୍ରରେ ଆମେ ତ କିଛି ଉଲ୍ଲେଖନୀୟ ଜ୍ଞାନ-ବିଜ୍ଞାନ ସୃଷ୍ଟିରେ ସମର୍ଥ ହୋଇ ପାରିଲୁ ନାହିଁ । ପୂର୍ବ ସର୍ଜିତ ପ୍ରଚଳିତ ଜ୍ଞାନ ବିଜ୍ଞାନ ଚର୍ଚ୍ଚା ବା ଅଧ୍ୟୟନ-ଅଧ୍ୟାପନାରେ କେତେ ଦୂର କିପରି ପାରଙ୍ଗମ ହୋଇଛୁ, ଦେଖାଯାଉ ।

## ଅଧ୍ୟାୟୀ ଦିବସ ହ୍ରାସ

ଉଚ୍ଚ ଶିକ୍ଷାୟତନମାନଙ୍କରେ ଏବେ କେତେ ପରିମାଣରେ ଅଧ୍ୟୟନ-ଅଧ୍ୟାପନା ଚାଲିଛି, ତାହା ପ୍ରଥମେ ଦେଖିବାର କଥା । ପ୍ରାୟ ସର୍ବତ୍ର ଅଧ୍ୟୟନ-ଅଧ୍ୟାପନା ଉପରେ ପ୍ରାଧାନ୍ୟ କ୍ରମେ ଊଣା ହେଉଛି । ଅନଧ୍ୟାୟୀ ଦିବସର ସଂଖ୍ୟା ବର୍ଷକୁ ବର୍ଷ ବୃଦ୍ଧି ପାଇବାରେ ଲାଗିଛି । ବିଶ୍ୱବିଦ୍ୟାଳୟ ଓ କଲେଜମାନଙ୍କରେ ପରୀକ୍ଷାଦିନଗୁଡ଼ିକ ବାଦ୍‌ଦେଇ ସର୍ବନିମ୍ନ ଅଧ୍ୟାୟୀ ଦିବସ ୧୮୦ ଦିନ ଅର୍ଥାତ୍ ୬ ମାସ ରହିବା ଉଚିତ୍ ବୋଲି ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ 'ଇଉନିଭରସିଟି ଏଜୁକେସନ କମିଶନ' (୧୯୪୮-୪୯) ମତପ୍ରଦାନ କରିଥିଲେ । କିନ୍ତୁ ପ୍ରକୃତ କ୍ଷେତ୍ରରେ ଏହି ୬ ମାସ ପଢ଼ାଶୁଣା ହେଉଛି କି ? ଅଧ୍ୟାପକ ଓ ଛାତ୍ର ସମାଜ ଏହା ବିଚାର କରି ଦେଖିବେ ।

ବର୍ଷକର ବାରମାସରୁ ରବିବାର, ସାଧାରଣ ଛୁଟି ଦିବସ ଏବଂ ଉଚ୍ଚ ଶିକ୍ଷାୟତନମାନଙ୍କରେ ଥିବା ବିଶେଷ ଛୁଟି ,ଗ୍ରୀଷ୍ମାବକାଶ, ପୂଜାବକାଶ ଆଦି ମିଶାଇ ୫ ମାସ ଅନଧ୍ୟାୟୀ କାଳ ଚାଲିଗଲା । ବାକି ଯେଉଁ ୭ ମାସ ରହିଲା, ତହିଁରୁ ପ୍ରାୟ ଅଢ଼େଇ ମାସ ବିଭିନ୍ନ କାରଣରୁ କ୍ଲାସ ହୋଇପାରେ ନାହିଁ । ତେଣୁ ଗୋଟିଏ ଶିକ୍ଷାବର୍ଷରେ ପ୍ରକୃତ ଅର୍ଥରେ ମାତ୍ର ସାଢ଼େ ଚାରିମାସ କ୍ଲାସ କରାଯାଇ ଥାଏ । ଏହାର ଏକ ହିସାବ ଏଠାରେ ଦିଆଯାଉଛି; ଫଳରେ କଥାଟା ସମସ୍ତଙ୍କ ନିକଟରେ ପରିଷ୍କାର ହୋଇଯିବ ।

ଜଣେ ଅଧ୍ୟାପକ ବର୍ଷକୁ ପନ୍ଦରଦିନ ସାମୟିକ ଛୁଟି (କାଜୁଆଲ୍ ଲିଭ୍) ସାଧାରଣତଃ ନେଇଥାଆନ୍ତି । ତଦୁପରି ରହିଛି ଅପସ୍‌ନାଲ୍ ଛୁଟି ବା ହଲିଡ଼େ । ଏହି ଛୁଟି ନିଜର ଏକ ଅଧିକାର ଭବରେ ଅଧିକାଂଶ ଅଧ୍ୟାପକ ନେଇଥାନ୍ତି । ଅଧ୍ୟାପକ ଏହି ଛୁଟିସବୁ ଯେଉଁ ଦିନମାନଙ୍କରେ ନିଅନ୍ତି, ସେହି ଦିନମାନଙ୍କରେ

ଥିବା ତାଙ୍କର ସମସ୍ତ କ୍ଲାସ୍ ପ୍ରାୟ ସ୍ଥଗିତ ରଖାଯାଏ । କ୍ୱଚିତ୍ ସେଭଳି କ୍ଲାସ ଉପସ୍ଥିତ ଥିବା ଅନ୍ୟ ଅଧ୍ୟାପକଙ୍କ ଦ୍ୱାରା କରଯାଇଥାଏ ।

ଏହା ଉପରେ ରହିଛି—ଅଧ୍ୟାପକମାନଙ୍କର କର୍ତ୍ତବ୍ୟଗତ ଛୁଟି ବା ଡିଉଟି ଲିଭ୍ । ପରୀକ୍ଷା ଖାତା ମୂଲ୍ୟାୟନ–କେନ୍ଦ୍ରରେ ଖାତାଦେଖା, ପରୀକ୍ଷା କେନ୍ଦ୍ରମାନଙ୍କୁ ସୁପରିନ୍‌ଟେଣ୍ଡେଣ୍ଟ୍ ହୋଇ ଯିବା କିମ୍ବା ସାମୟିକ ସୁପରଭାଇଜ୍ କରିବା ପାଇଁ ଯିବା; ବିଶ୍ୱବିଦ୍ୟାଳୟମାନଙ୍କର ବୋର୍ଡ ଅବ୍ ଷ୍ଟଡ଼ିଜ୍, ବିଭିନ୍ନ କଣ୍ଡକ୍ଟିଂ ବୋଡ଼୍, ପ୍ରଶ୍ନ ପତ୍ର ତିଆରି ଓ ମଡ଼ରେସନ୍ କାର୍ଯ୍ୟ, ବିଭିନ୍ନ ପ୍ରକାର ପ୍ରାକ୍ଟିକାଲ୍ ପରୀକ୍ଷା, 'ଭାଇଭା' ବା ମୌଖିକ ପରୀକ୍ଷା କାର୍ଯ୍ୟ ଉଦ୍ଦେଶ୍ୟରେ ଯିବା; ସରକାରୀ ଓ ଅର୍ଦ୍ଧସରକାରୀ ସଂସ୍ଥାର ବିଭିନ୍ନ କମିଟି, ପରାମର୍ଶଦାତା ବୋର୍ଡ ବା ବିଚାରକ-ମଣ୍ଡଳୀରେ ଯୋଗ ଦେବା, ଇତ୍ୟାଦି ଇତ୍ୟାଦି ବହୁ ବିଭିନ୍ନ କାରଣରୁ ଅଧ୍ୟାପକମାନେ ଡ଼ିଉଟି ଲିଭ୍ ପାଇଥାଆନ୍ତି । ଏପରି ଛୁଟି ଅଧ୍ୟାପକଙ୍କ ପକ୍ଷରେ ବର୍ଷକୁ ହାରହାରି ଦଶଦିନ ପଡ଼ିଯାଉଥିବାର ଦେଖାଯାଏ । ଡିଉଟି-ଲିଭ୍‌ରେ ଯାଉଥିବା ଅଧ୍ୟାପକମାନଙ୍କର କ୍ଲାସ ମଧ୍ୟ କ୍ୱଚିତ ଉପସ୍ଥିତ ଥିବା ଅନ୍ୟ ଅଧ୍ୟାପକଙ୍କ ଦ୍ୱାରା କରଯାଇଥାଏ । ଶିକ୍ଷାନୁଷ୍ଠାନଗୁଡ଼ିକ ବନ୍ଦଥିବା ସମୟରେ ସାଧାରଣତଃ ଅଧ୍ୟାପକମାନଙ୍କର ଏହି ସବୁ ଡ଼ିଉଟି ପଡ଼ିପାରିଲେ, ଭଲ ହୁଅନ୍ତା । କ୍ଲାସ ଗୁଡ଼ିକ ଅନ୍ତତଃ ମାରପଡ଼ନ୍ତା ନାହିଁ ।

ସବୁରି ଉପରେ କର୍ତ୍ତୃପକ୍ଷଙ୍କ ଦ୍ୱାରା କ୍ଲାସ୍ ସ୍ଥଗିତ ରଖିବା ବା ସସ୍‌ପେନ୍‌ସନ୍ ଅବ୍-କ୍ଲାସେସ୍ । ଏହାର କିଛି ହାତ ଗୋଡ଼ ନାହିଁ । ଶିକ୍ଷାୟତନର କର୍ତ୍ତୃପକ୍ଷଙ୍କ ଦ୍ୱାରା ବିଭିନ୍ନ କାରଣରୁ ଯେ-କୌଣସି ସମୟରେ କ୍ଲାସ ସ୍ଥଗିତ କରଯାଇପାରେ । ପରୀକ୍ଷା ଚାଲିଛି; ସପ୍ତାହ ସପ୍ତାହ କାଳ କ୍ଲାସ୍ ହୋଇପାରୁ ନାହିଁ । ଶ୍ରେଣୀ-ଗୃହ ଗୁଡ଼ିକ ପରୀକ୍ଷା ହଲ୍ ହୋଇଛି ଏବଂ ଅଧ୍ୟାପକମାନେ ହୋଇଛନ୍ତି ସେହି ପରୀକ୍ଷାର ନିରୀକ୍ଷକ (ଇନ୍‌ଭିଜିଲେଟର) ଓ ପରିଚାଳକ (ସୁପରିନ୍‌ଟେଣ୍ଡେଣ୍ଟ୍) । ଏବେ ପୁଣି ଆସି ପହଞ୍ଚିଛି କେନ୍ଦ୍ରୀୟ ମୂଲ୍ୟାୟନ ପଦ୍ଧତି ବା ସେଣ୍ଟ୍ରାଲ୍ ଭାଲୁଏସନ୍ ସିଷ୍ଟମ୍ । ଶ୍ରେଣୀକକ୍ଷ କାହିଁ, ଅଧ୍ୟାପକ କାହାନ୍ତି ଯେ କ୍ଲାସ ଚାଲିବ ! ଏ କ୍ଷେତ୍ରରେ ବଡ଼ ବଡ଼ କଲେଜ୍‌ମାନଙ୍କରେ ଅଧିକ ଘରଦ୍ୱାର ଥିବାରୁ ଟିକିଏ ରକ୍ଷା ରକ୍ଷଣ ଅଛି । କିନ୍ତୁ ସାନ ସାନ କଲେଜଗୁଡ଼ିକର ଅବସ୍ଥା

ଶୋଚନୀୟ । ଶ୍ରେଣୀ କକ୍ଷ ଓ ଅଧ୍ୟାପକ ବୃନ୍ଦ ପରୀକ୍ଷା କାର୍ଯ୍ୟରେ ଲାଗିଥିବାରୁ ସେଠାରେ ଥରକେ ପନ୍ଦର-କୋଡ଼ିଏ ଦିନ କାଳ କ୍ଲାସ୍ ହୋଇପାରେ ନାହିଁ । ସେହିପରି ଗଣେଶ ପୂଜା ବା ସରସ୍ୱତୀ ପୂଜା ଦିନଟି ସାଧାରଣ ଛୁଟି, କଲେଜ ବନ୍ଦ । କିନ୍ତୁ ପୂଜାର ପୂର୍ବଦିନ ତଥା ପରଦିନ ଯଥାକ୍ରମେ ସଜାସଜି ଓ ମୂର୍ତ୍ତି ବିସର୍ଜନ ପାଇଁ କ୍ଲାସ୍ ସ୍ଥଗିତ କରିବାକୁ ପଡ଼େ । ୟୁନିୟନ୍ ଇଲେକ୍‌ସନ୍ ପାଇଁ କ୍ଲାସ୍ ତ ସ୍ଥଗିତ ରହେ ! ଇଲେକ୍‌ସନର ଠିକ୍ ପରଦିନଟିରେ କ୍ଲାସ ବନ୍ଦ କରିବାକୁ ପଡ଼େ । କେଉଁଠି କେଉଁଠି ଇଲେକ୍‌ସନ ଦିନ କଲେଜ୍ ବାରଣ୍ଡା ଓ ଶ୍ରେଣୀ କକ୍ଷ ଗୁଡ଼ିକରେ ଜମିଥିବା ଅଳିଆ ଆବର୍ଜନା ସଫା କରିବା, ଅସଜଡ଼ା ବେଞ୍ଚ୍ ଡ଼େସକ୍ ସଜାଇବା ଉଦ୍ଦେଶ୍ୟରେ—ଅଉ କେଉଁଠି କେଉଁଠି ନବ ନିର୍ବାଚିତ ସଭାପତିଙ୍କ 'ଘୋଷିତଛୁଟି' ଖବରେ ସେହି ଇଲେକ୍‌ସନ ପରଦିନଟିରେ କ୍ଲାସ ସ୍ଥଗିତ ରଖିବାକୁ ପଡ଼ିଥାଏ' । ଏହା ବ୍ୟତୀତ ରହିଛି ବହୁବିଧ ସଭା-ସମିତି, ନାଟ୍ୟାଭିନୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ କ୍ଲାସ ବନ୍ଦ କରିବା । ହିସାବରୁ ଦେଖା ଯାଇଛି—ପ୍ରତି ମାସ ଏହିପରି ଅନ୍ତତଃ ଛଅଦିନ ଅଧ୍ୟୟନ ଅଧ୍ୟାପନା ସ୍ଥଗିତ ରହେ । ତେଣୁ ସାତ ମାସ ଭିତରେ କ୍ଲାସ ସ୍ଥଗିତ ରହେ ମୋଟ ୪୨ ଦିନ ।

ଏହା ବ୍ୟତୀତ ରହିଛି ପ୍ରାକୃତିକ ବିପଦ ଆପଦ, ଦୁର୍ଯ୍ୟୋଗ ଦୁର୍ଘଟଣା । ପ୍ରବଳ ବର୍ଷା, ବନ୍ୟା, ଝଡ଼ ବତାସ ଆଦି କାରଣରୁ ବର୍ଷକୁ ଅନ୍ତତଃ ଚାରିଦିନ କ୍ଲାସ ସ୍ଥଗିତ ରଖିବା ପାଇଁ ପଡ଼ିଥାଏ । ଏହିପରି ସାତ ମାସର ଅଧ୍ୟୟନ-ଅଧ୍ୟାପନା କାଳ ମଧ୍ୟରେ ୧୯+୧୦+୪୨+୪=୭୫ ଦିନ ବା ଅଢ଼େଇ ମାସ ଉଚ୍ଚଶିକ୍ଷାୟତନ ଗୁଡ଼ିକ ଖୋଲଥିଲେ ବି ପ୍ରାୟତଃ ବନ୍ଦ ରହିଥାଏ ବା ପ୍ରକୃତ ଅର୍ଥରେ ଅଧ୍ୟୟନ ଅଧ୍ୟାପନା ଚାଲିପାରେ ନାହିଁ । ସୁତରାଂ ଗୋଟିଏ ଶିକ୍ଷାବର୍ଷ ମଧ୍ୟରେ ଅଧ୍ୟାୟୀ ଦିବସର ସଂଖ୍ୟା ମାତ୍ର ୧୩୫ ଦିନ ବା ସାଢ଼େ ଚାରି ମାସ । ଅନଧ୍ୟାୟୀ ଦିବସର ସଂଖ୍ୟା ପ୍ରାୟ ୨୨୫ ଦିନ ବା ସାଢ଼େ ସାତ ମାସ ।

ଅଧ୍ୟୟନ, ଅଧ୍ୟାପନା—ଯେଉଁ ପ୍ରଧାନ ଉଦ୍ଦେଶ୍ୟ ଘେନି ଉଚ୍ଚ ଶିକ୍ଷାୟତନ ଗୁଡ଼ିକ ଠିଆ ହୋଇଛି—ତାହା ଏବେ କେତେ ଦୂର ବ୍ୟାହତ

ଓ ବିପର୍ଯ୍ୟସ୍ତ ହେଉଛି, ତାହା ଏଥିରୁ ସ୍ପଷ୍ଟ ଜଣା ପଡ଼ିବ । ଅଧ୍ୟୟନ-ଅଧ୍ୟାପନା ଉପରେ ଗୁରୁତ୍ୱ ନ ଦେଲେ, କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଆମେ ତାହା ହେଲେ ଆଉ କି କାର୍ଯ୍ୟ କରିବା ?

ଆମର ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ଏବେ ଯେ ଅଧ୍ୟାୟୀ ଦିବସ କମିବାରେ ଓ ଅନଧ୍ୟାୟୀ ଦିବସ ବଢ଼ିବାରେ ଲାଗିଛି, ସେଥିପାଇଁ କାହାରି କିଛି ଶୋଚନା ଥିବାର ଜଣାଯାଉ ନାହିଁ । ଏହାଦ୍ୱାରା ସବୁଠାରୁ ବେଶି କ୍ଷତି ହେଉଛି ଯେଉଁ ଛାତ୍ର ସମାଜର, ଅତି କ୍ଷୋଭର କଥା ହେଉଛି—ସେହି ଛାତ୍ର ସମାଜ ଏ ବିଷୟରେ ଏକ ପ୍ରକାର ଉଦାସୀନ ଓ ଅନାସକ୍ତ । ପୁଣି କ୍ଲାସ ନହେଲେ ବା ପଢ଼ାପଢ଼ି ବନ୍ଦ ହେଲେ, କେତେକ ଛାତ୍ର ଖୁସି । କାରଣ ସେହି ସମୟରେ ସେମାନଙ୍କ ପାଇଁ ଅନ୍ୟାନ୍ୟ ବହୁ ମଜେଦାର ବା ଆକର୍ଷଣୀୟ କାର୍ଯ୍ୟ କରିବା-ପାଇଁ ରହିଛି । ବାପା ମାଆ ଅଭିଭାବକଙ୍କ ସତର୍କ ଦୃଷ୍ଟି ଦୂରରେ, ଅଧ୍ୟକ୍ଷ-ଅଧ୍ୟାପକଙ୍କୁ ଖାତିର୍ କରେ କିଏ; ସେମାନେ ପାଠପଢ଼ା ବ୍ୟତୀତ ଯାହା ଖୁସି ତାହା କରି ଚାଲନ୍ତି । ଏଭଳି ଛାତ୍ରଛାତ୍ରୀଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଥିବାର ଦେଖାଯାଏ । କୌଣସି ମତେ କଲେଜ୍ ବା ବିଶ୍ୱବିଦ୍ୟାଳୟରେ 'ପାଠପଢ଼ିବା' ନାମରେ ସ୍ଥାନଟିଏ ବା ଗୋଟିଏ ସିଟ୍ ଦରକାର । କଳେ ବଳେ କୌଶଳେ ଉଚ୍ଚ ଶିକ୍ଷାନୁଷ୍ଠାନରେ ବିଧିବଦ୍ଧ ଛାତ୍ରଛାତ୍ରୀ ଭାବରେ ଭର୍ତ୍ତି ହେବା ଲୋଡ଼ା । ତା ପରେ କାମ ଫତେ ! କ୍ଲାସ୍ ନ କଲେ କିମ୍ବା ପଢ଼ାପଢ଼ି ନ କଲେ, ବିଶେଷ କ୍ଷତି ନାହିଁ । ପରୀକ୍ଷା-ବୈତରଣୀ ! ତାହା ତ ଦୂରରେ ! ତାହା ଅତିକ୍ରମ କରି ଡିଗ୍ରୀ ଡିପ୍ଲୋମାର ଫୁଲମାଳଟିଏ ବେକରେ ଗଳାଇବା ପାଇଁ ଏବେ ତ ପାଠପଢ଼ା ଛଡ଼ା ଆଉ ବହୁ ଉପାୟ ବାହାରିଲାଣି !

ବିଶ୍ୱବିଦ୍ୟାଳୟର ବିଭିନ୍ନ ପରୀକ୍ଷାରେ ବସିବା ପାଇଁ ଛାତ୍ରଛାତ୍ରୀ-ମାନଙ୍କୁ ସମର୍ଥ ହେବାଲାଗି ଶତକଡ଼ା ଏକ ନିର୍ଦ୍ଦିଷ୍ଟ ହାରରେ କ୍ଲାସ ଉପସ୍ଥାନର ନିୟମ ରହିଛି । କିନ୍ତୁ ଦୁଃଖର କଥା, ଏବେ ଏହି ନିୟମ ଅଧିକାଂଶ ସ୍ଥଳରେ ଠିକ୍ ଭାବରେ ଅନୁସୃତ ହେଉନାହିଁ । ନିୟମଟି ପ୍ରତି ବହୁ କ୍ଷେତ୍ରରେ ଆଖିଠାର ମାରିଦିଆ ହେଉଛି । ଜେନେରାଲ୍ ବା ଥିଓରି କ୍ଲାସ ଏବଂ ଟିଉଟୋରିଆଲ୍ ବା ପ୍ରାକ୍ଟିକାଲ୍ କ୍ଲାସ୍—ଉଭୟରେ ଛାତ୍ରଛାତ୍ରୀଙ୍କର ଉପସ୍ଥାନ ସ୍ୱତନ୍ତ୍ର ଭାବରେ

ହିସାବ କରଯିବାର କଥା । ଜେନେରଲ୍ ବା ଥିଓରି କ୍ଲାସ୍‌ଗୁଡ଼ିକ କାହିଁ କୁଳେଇ କରହେଉଛି ଏବଂ ସେହିଁରେ ଛାତ୍ରଛାତ୍ରୀମାନଙ୍କ ଉପସ୍ଥାନର ହିସାବ ପ୍ରତି ବହୁ କ୍ଷେତ୍ରରେ ଗୁରୁତ୍ବ ଦିଆଯାଉ ନାହିଁ । ଯଦି କୌଣସି ଛାତ୍ର ବା ଛାତ୍ରୀ ଗୋଟିଏ ଶିକ୍ଷାବର୍ଷ ମଧ୍ୟରେ ଜେନେରଲ ବା ଥିଓରି କ୍ଲାସ୍‌ରେ ଆଦୌ ଉପସ୍ଥିତ ହେଉ-ନାହିଁ, କିମ୍ବା ଖୁବ୍ କମ୍ କ୍ଲାସରେ ଉପସ୍ଥିତ ରହୁଛି, ସେ ବିଭିନ୍ନ ପରୋକ୍ଷ ପଥ ବା କୁଟିଳ ଉପାୟରେ ପରେ ଶତକଡ଼ା ନିର୍ଦ୍ଦିଷ୍ଟ ହାରରେ କ୍ଲାସ୍ ଉପସ୍ଥାନ ହାସଲ କରିପାରୁ ଥିବାର ଦେଖାଯାଉଛି । ଏ ଦିଗରେ କୌଣସି ନୀତି ନିୟମ ଅନୁସୃତ ହେଉଥିବାର ଜଣାଯାଉ ନାହିଁ ।

ଟିଉଟୋରିଆଲ୍ କ୍ଲାସ୍‌ଗୁଡ଼ିକ କଥା ଥାଉ କ'ଣ ବାହୁନିବା ? ଏବେ ଅଧିକାଂଶ ଉଚ୍ଚଶିକ୍ଷାନୁଷ୍ଠାନରେ ଟିଉଟୋରିଆଲ୍ କ୍ଲାସ୍ ଉପସ୍ଥାନର ହିସାବ ତ ଦୂରର କଥା, ଛାତ୍ରଛାତ୍ରୀଙ୍କ ପକ୍ଷରେ ଅତ୍ୟାବଶ୍ୟକ ସେହି କ୍ଲାସଗୁଡ଼ିକ ଆଦୌ ହେଉ ନାହିଁ ; କିମ୍ବା ଏପରି ଭବରେ ଏତେ କମ କ୍ଲାସ୍ ହେଉଛି ଯେ, ତାହା ନ ହେବା ସଙ୍ଗେ ସମାନ । ଟିଉଟୋରିଆଲ୍ କ୍ଲାସ୍‌ର ଉପାଦେୟତା ଶିକ୍ଷାବିତ୍-ମାନଙ୍କ ଦ୍ୱାରା ସ୍ୱୀକୃତ ଏବଂ ଆମର ଶିକ୍ଷା ପଦ୍ଧତିର ଏହା ଅପରିହାର୍ଯ୍ୟ ଅଙ୍ଗ । ଥିଓରି ବା ଜେନେରଲ୍ କ୍ଲାସ୍‌ରେ ଯାହା ପଢ଼ା ଯାଉଥାଏ, ତାହାର ବିଶ୍ଳେଷଣ ଓ ସ୍ପଷ୍ଟୀକରଣ ଏହି ଟିଉଟୋରିଆଲ୍ କ୍ଲାସ୍‌ମାନଙ୍କରେ ହୋଇଥାଏ । ପଠିତ ବିଷୟଗୁଡ଼ିକ ଉପରେ ସାମୟିକ ପରୀକ୍ଷା ମଧ୍ୟ ଏହି କ୍ଲାସ୍‌ରେ କରଯାଇଥାଏ । ସାନ ସାନ ଗ୍ରୁପ୍ ବା ଅଳ୍ପସଂଖ୍ୟକ ଛାତ୍ରଛାତ୍ରୀଙ୍କୁ ନେଇ ଟିଉଟୋରିଆଲ୍ କ୍ଲାସଗୁଡ଼ିକ ଅନୁଷ୍ଠିତ ହେଉଥିବାରୁ ଜଣ ଜଣ କରି ପ୍ରତ୍ୟେକ ଛାତ୍ର ବା ଛାତ୍ରୀର ପଠିତ ବିଷୟରେ ଥିବା ଅସ୍ପଷ୍ଟତା, ଅଭାବ ଅସୁବିଧା ଏହିଠାରେ ହିଁ ଦୂରକରିବା ସମ୍ଭବ ହୋଇଥାଏ, ଯାହା ବହୁସଂଖ୍ୟକ ଛାତ୍ର ଛାତ୍ରୀ-ବିଶିଷ୍ଟ ଜେନେରଲ୍ କ୍ଲାସ୍‌ରେ ସମ୍ଭବ ହୋଇପାରେ ନାହିଁ । ଟିଉଟୋରିଆଲ୍ କ୍ଲାସ୍‌ଗୁଡ଼ିକର ଆଉ ଏକ ବଡ଼ ତାତ୍ପର୍ଯ୍ୟ ରହିଛି । ଛାତ୍ର ଛାତ୍ରୀ ଓ ଶିକ୍ଷକ-ଶିକ୍ଷିକା ପରସ୍ପରକୁ ଜାଣିବା ପାଇଁ ଏହି କ୍ଲାସ୍‌ଗୁଡ଼ିକ ସୁଯୋଗ ସୃଷ୍ଟି କରିଥାଏ । ବୋଲିବା ବାହୁଲ୍ୟ ଯେ— କି ଉଚ୍ଚଶିକ୍ଷା, କି ନିମ୍ନଶିକ୍ଷା— ପ୍ରତ୍ୟେକ ସ୍ତରରେ ଛାତ୍ର ଛାତ୍ରୀ ଓ ଶିକ୍ଷକ-ଶିକ୍ଷିକାଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ଓ ସାନ୍ନିଧ୍ୟ ଅତ୍ୟାବଶ୍ୟକ । ଏବେ

ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ଏହି ସମ୍ପର୍କ ଓ ସାନ୍ନିଧ୍ୟ ଊଣା ହୋଇଯାଉଛି । ଉଭୟ ଛାତ୍ର-ପକ୍ଷ ଓ ଶିକ୍ଷକ-ପକ୍ଷ ଏହା ଉପରେ ଆଉ ଗୁରୁତ୍ୱ ଦେଉ ନ ଥିବାର ଜଣାପଡ଼ୁଛି । ନିୟମିତ ବିଧିବଦ୍ଧ ଭାବରେ ଟିଉଟୋରିଆଲ୍ କ୍ଲାସ୍‌ଗୁଡ଼ିକ ହୋଇ ପାରିଲେ, ଛାତ୍ର ଛାତ୍ରୀ ଶିକ୍ଷକ ଶିକ୍ଷିକାଙ୍କ ମଧ୍ୟରେ ଦୂରତ୍ୱ ଊଣା ହୋଇ ନିକଟ ସଂପର୍କ ସ୍ଥାପିତ ହୋଇପାରନ୍ତା ।

ଟିଉଟୋରିଆଲ୍ କ୍ଲାସ୍‌ଗୁଡ଼ିକ ପ୍ରତି ଗୁରୁତ୍ୱ ଦିଆଯାଉ ନାହିଁ କାହିଁକି ? ଏଥିପାଇଁ ଦାୟୀ କିଏ ? ଛାତ୍ର-ଛାତ୍ରୀ ମାନଙ୍କଠାରୁ ଶୁଣାଯାଏ— ଅଧିକାଂଶ ଟିଉଟୋରିଆଲ୍ କ୍ଲାସ୍‌କୁ ଶିକ୍ଷକ-ଶିକ୍ଷିକା ଆସୁ ନାହାନ୍ତି ; ବହୁ କ୍ଷେତ୍ରରେ କମନ୍‌ରୁମ୍ ବା ଡିପାର୍ଟମେଣ୍ଟ୍‌ରେ ବସି ଉପସ୍ଥାନ ରେଜିଷ୍ଟରରେ ଛାତ୍ରଛାତ୍ରୀଙ୍କ ଠାରୁ ରୋଲ୍ ନମ୍ବର ନେଇ ଉପସ୍ଥାନ ପକାଇ ଦେଉଛନ୍ତି । ଶିକ୍ଷକ ଶିକ୍ଷିକାମାନେ କହନ୍ତି—ଛାତ୍ର ଛାତ୍ରୀମାନେ ଟିଉଟୋରିଆଲ୍ କ୍ଲାସକୁ ଆସୁ ନାହାନ୍ତି । ଅଧିକାଂଶ କ୍ଷେତ୍ରରେ ଟିଉଟୋରିଆଲ୍ କ୍ଲାସ୍‌ରେ ଛାତ୍ରଛାତ୍ରୀମାନଙ୍କର ଉପସ୍ଥାନ ସଂଖ୍ୟା ହିସାବ କରଯାଉ ନ ଥିବାରୁ ଏହି ଅବସ୍ଥା ବୋଧହୁଏ ଦେଖାଦେଉଛି । ତେଣୁ ଆମେ ଟିଉଟୋରିଆଲ୍ କ୍ଲାସ୍‌ମାନଙ୍କୁ ଯାଇ ତୁଚ୍ଛାରେ ଫେରିଆସୁଛୁ ।

ଏହା ବାସ୍ତବିକ୍ ଏକ ଅମୀମାଂସିତ ପ୍ରଶ୍ନ । ଛାତ୍ରଛାତ୍ରୀମାନେ ଆସୁ ନ ଥିବାରୁ ଟିଉଟୋରିଆଲ୍ କ୍ଲାସ୍ ହୋଇ ପାରୁ ନାହିଁ, ନା, ଶିକ୍ଷକ ଶିକ୍ଷିକା-ମାନେ ଗୁରୁତ୍ୱ ଦେଉ ନ ଥିବାରୁ ଏ କ୍ଲାସ୍‌ଗୁଡ଼ିକ ବାଦ୍ ପଡ଼ିଯାଉଛି ? ଉଚ୍ଚ-ଶିକ୍ଷାନୁଷ୍ଠାନଗୁଡ଼ିକର କର୍ତ୍ତୃପକ୍ଷ ଏ ବିଷୟରେ ଅନୁସନ୍ଧାନ କରି ଅବିଳମ୍ବେ ଟିଉଟୋରିଆଲ୍ କ୍ଲାସ୍ ହେବା ଦିଗରେ ପଦକ୍ଷେପ ନେବା ଉଚିତ୍ । ଟିଉଟୋ-ରିଆଲ୍ କ୍ଲାସ୍‌ଗୁଡ଼ିକ ଅନ୍ତର୍ଭୁକ୍ତ କରି ଓ୍ୱାର୍କ ଲୋଡ୍ ପ୍ରସ୍ତୁତ ପୂର୍ବକ ଯେତେବେଳେ ପୋଷ୍ଟ ସୃଷ୍ଟି ହେଉଛି ଏବଂ ତଦନୁଯାୟୀ ଶିକ୍ଷକ-ଶିକ୍ଷିକା ନିଯୁକ୍ତ ହେଉଛନ୍ତି, ସେତେବେଳେ ଏହି କ୍ଲାସ୍‌ଗୁଡ଼ିକ ନ ହେବ କାହିଁକି ?

ଉଚ୍ଚ ଶିକ୍ଷାୟତନମାନଙ୍କରେ ଏହିପରି ଅନଧ୍ୟାୟୀ ଦିବସ ବୃଦ୍ଧି ଲାଭ କରୁଥିବାରୁ ଏବଂ ଯେଉଁ ଅଧ୍ୟାୟୀ ଦିବସଗୁଡ଼ିକ ମିଳୁଛି, ତହିଁରେ ଏହିପରି ଅଧ୍ୟୟନ ଅଧ୍ୟାପନା ଭଲ ଭାବରେ ହେଉ ନ ଥିବାରୁ ପରିଣାମ ବିଷମୟ

ହେଉଛି । ଏହି ବିଷମୟ ପରିଣତି ଏବେ ପ୍ରତ୍ୟେକ ସଚେତନ ବ୍ୟକ୍ତି ଉପଲବ୍ଧି କଲେଣି । ଅବଶ୍ୟ ଶିକ୍ଷାନୁଷ୍ଠାନରେ ଯୋଗ ନ ଦେଇ —ବିଧିବଦ୍ଧ ଭାବରେ କ୍ଲାସ୍‌ରେ ପଢ଼ାଶୁଣା ନ କରି ଜଣେ ଛାତ୍ର ବା ଛାତ୍ରୀ ଶିକ୍ଷା ଲାଭ କରିପାରେ, ତାହାର ଉପଯୁକ୍ତ ବିଦ୍ୟାର୍ଜନ ମଧ୍ୟ ହୋଇପାରେ । ତାହା ହେଲେ ପ୍ରଶ୍ନ ହେଉଛି—ଆମର ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକର ଆଉ କାର୍ଯ୍ୟ କ'ଣ ? ବହୁଳ ଅର୍ଥ ବ୍ୟୟରେ ସେଗୁଡ଼ିକ ପରିଚାଳିତ ହେବାରେ ଆଉ କି ଆବଶ୍ୟକତା ରହିଛି ?

## ଶିକ୍ଷାଲବ୍ଧ ଜ୍ଞାନର ସ୍ୱଳ୍ପତା

ଯଥେଷ୍ଟ ପରିମାଣରେ ଅଧ୍ୟାୟୀ ଦିବସ ନ ମିଳିବାରୁ ଏବଂ ଅଧ୍ୟୟନ-ଅଧ୍ୟାପନା ସନ୍ତୋଷଜନକ ଭାବରେ ହେଉ ନ ଥିବାରୁ ତାହାର ବିଭିନ୍ନ କ୍ଷତିକାରକ ଉପସର୍ଗ ପରିଲକ୍ଷିତ ହେଲଣି । ଜ୍ଞାନାର୍ଜନ ବା ବିଦ୍ୟାଲାଭ କଥା ଚଲିକି ଯାଉ, କୌଣସି ମତେ ପରୀକ୍ଷା ପାସ୍ କରି ଡିଗ୍ରୀ-ଡିପ୍ଲୋମାଟାଏ ତ ହାସଲ କରିବା ଦରକାର ! ସେଥିପାଇଁ ଛାତ୍ରଛାତ୍ରୀମାନେ କେତେକ 'ଅଧମତାରଣ ପନ୍ଥା' ଅବଲମ୍ବନ କଲେଣି । ପ୍ରାଇଭେଟ୍ ଟିଉସନ୍ କିମ୍ବା ଟିଉଟୋରିଆଲ୍ କଲେଜ୍‌ରେ ସକାଳେ ଓ ସନ୍ଧ୍ୟାରେ ଯାଇ ପଢ଼ିବା, ବଜାରରେ ମିଳୁଥିବା ଶସ୍ତା ନୋଟ୍ ବହି କିମ୍ବା 'ମେଡ୍-ଇଜି' (Made-easy) ଗ୍ରନ୍ଥମାଳାର ଶରଣାପନ୍ନ ହେବା ଏବେ ବହୁ ପରିମାଣରେ ବଢ଼ିଯାଇଥିବାର ଦେଖାଯାଉଛି । ପୂର୍ବରୁ ଏହା ସବୁ ଯେ ଆଦୌ ହେଉ ନ ଥିଲା, ତାହା ନୁହେଁ । ସେତେବେଳେ ସାଧାରଣତଃ ଖରାପ ଛାତ୍ରଛାତ୍ରୀମାନେ ନିହାତି ଦାୟରେ ପଡ଼ି ଯେଉଁ ବିଷୟରେ ପାରୁ ନ ଥିଲେ, କେବଳ ସେହି ବିଷୟରେ ଟିଉସନ୍ ପଢ଼ୁଥିଲେ କିମ୍ବା ନୋଟ୍ ବହିର ସାହାଯ୍ୟ ନେଉଥିଲେ । ଏବେ କି ଖରାପ ଛାତ୍ର, କି ଭଲ ଛାତ୍ର ସମସ୍ତେ ସବୁ ପାଠ୍ୟ ବିଷୟରେ ନିୟମିତ ଟିଉସନ୍ ପଢ଼ୁଛନ୍ତି । ଶିକ୍ଷକ-ଶିକ୍ଷିକାମାନେ ପ୍ରାଇଭେଟ୍ ଟିଉସନ୍ କରିବାକୁ ପଛାଇବେ କାହିଁକି ? ଟିଉସନ୍ କରିବାପାଇଁ ନୀତିନିୟମ ନ ଥିଲେ ବି, ଏହାଦ୍ୱାରା ବେଶ୍ ହାତ ଚିକ୍‌କଣ ହେବାର ସୁବିଧା ମିଳୁଛି । ତେଣୁ କେତେକ ଶିକ୍ଷକ-ଶିକ୍ଷିକା ସେହି ଧନ୍ଦାରେ ଲଗିଛନ୍ତି । ଛାତ୍ର-ଛାତ୍ରୀଙ୍କର ବାଜି, ଶିକ୍ଷକ-ଶିକ୍ଷିକା ରାଜି, ତେଣୁ କଣ କରିବେ କାଜୀ ? ତେଣେ ଅଭିଭାବକମାନଙ୍କର ଯେ ଗଳାଗାଜି, ତହିଁକି ନିଘା ଦେଉଛି କିଏ ?

କଟକ, ଭୁବନେଶ୍ୱର ଆଦି ସ୍ଥାନରେ ଏହି ଉଦ୍ଦେଶ୍ୟରେ କେତେକ ଟିଉଟୋରିଆଲ୍ କଲେଜ୍ ବା ଏକାଡେମୀ ବିଧିବଦ୍ଧ ଭାବରେ କାର୍ଯ୍ୟ କରୁଛି । ଇଂରାଜୀ ସମେତ ପଦାର୍ଥ ବିଜ୍ଞାନ, ଗଣିତ, ରସାୟନ ବିଦ୍ୟା, ଇତିହାସ, ଅର୍ଥନୀତି ପ୍ରଭୃତି ବିଭିନ୍ନ ବିଷୟରେ ସେହିସବୁ ପ୍ରତିଷ୍ଠାନରେ ନିୟମିତ କୋଚିଂ ଦିଆଯାଉଛି । 'ଅଭିଜ୍ଞ ଅଧ୍ୟାପକମାନେ' କୁଆଡ଼େ ସେହି କୋଚିଂ ଦେବା କାର୍ଯ୍ୟ କରୁଛନ୍ତି । ପୁଣି, ସେହି କୋଚିଂ ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ 'ପରୀକ୍ଷା ପାଶ୍ କରିବାର ଗ୍ୟାରେଣ୍ଟି' ମଧ୍ୟ ଦିଆଯାଉଛି । ହାୟ, ହାୟ, ଆମର ସୁପ୍ରତିଷ୍ଠିତ ବଡ଼ ବଡ଼ କଲେଜ ଓ ବିଶ୍ୱବିଦ୍ୟାଳୟ ସବୁ ଗଲେ କୁଆଡ଼େ ? ସେମାନେ ନିଃସହାୟ ଛାତ୍ରଛାତ୍ରୀମାନଙ୍କୁ ପରୀକ୍ଷା ପାଶର ଗ୍ୟାରେଣ୍ଟି ଦେଇ ପାରିବେ କି ? ପରୀକ୍ଷାରେ ପାଶ୍ କରି ଗୋଟାଏ ଡିଗ୍ରୀ ଡିପ୍ଲୋମା ହାସଲ କରିବା ନିହାତି ଦରକାର, ସେହି ଡିଗ୍ରୀ-ଡିପ୍ଲୋମା ଅନୁଯାୟୀ ଜ୍ଞାନ ବା ବିଦ୍ୟା-ଲାଭ ନ ହୋଇଥାଉ ପଛକେ !

ଛାତ୍ରଛାତ୍ରୀମାନେ ଏବେ ବି.ଏ., ଏମ୍.ଏ., ବି.କମ୍, ଏମ୍.କମ୍., ଏମ୍.ଏସ୍‌ସି., ପିଏଚ୍.ଡି., ଡି.ଲିଟ, ଡି.ଏସ୍‌ସି. ଆଦି ଢେର ଉଚ୍ଚତମ ଡିଗ୍ରୀ ହାସଲ କରୁଛନ୍ତି ସତ୍ୟ ; କିନ୍ତୁ ସେମାନଙ୍କ ମଧ୍ୟରୁ କେତେ ଜଣ ଡିଗ୍ରୀ ଅନୁଯାୟୀ ଜ୍ଞାନ ବା ବିଦ୍ୟା ଅର୍ଜନରେ ସମର୍ଥ ହୋଇଛନ୍ତି ? ଜଣେ ଏମ୍.ଏ. ବା ଏମ୍.ଏସ୍‌ସି. ଡିଗ୍ରୀଧାରୀ ତାଙ୍କର ନିଜ ପାଠ୍ୟ ବିଷୟରେ ଏତେ କମ୍ ଜ୍ଞାନ ବା ବିଦ୍ୟା ଘେନି ବିଶ୍ୱବିଦ୍ୟାଳୟର ଏରୁଣ୍ଡି ବନ୍ଧ ଡେଇଁ ଆସୁଛନ୍ତି ଯେ, ବାସ୍ତବ ସଂସାରର ପରୀକ୍ଷାରେ ଠିଆ ହୋଇ ପାରୁ ନାହାନ୍ତି । ଜ୍ଞାନ ବିଜ୍ଞାନର ଏକ ନିର୍ଦ୍ଦିଷ୍ଟ ବିଷୟରେ ଜଣେ ପିଏଚ୍.ଡି. କରୁଛନ୍ତି, କିନ୍ତୁ ସେହି ବିଷୟରେ ତାଙ୍କର ଧ୍ୟାନଧାରଣା ଏତେ ସୀମିତ ଓ ଅସ୍ପଷ୍ଟ ଯେ, ରାଜ୍ୟ ବାହାରେ ବା ଦେଶ ବାହାରେ ଥିବା ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟମାନଙ୍କରେ ପହଞ୍ଚିଗଲାବେଳକୁ ତାଙ୍କର ଅଭାବ ଅସୁବିଧା ଧରାପଡ଼ି ଯାଉଛି । ଡିଗ୍ରୀ ଡିପ୍ଲୋମା ଗୋଟାଏ ପଟରେ ତ, ସେହି ଡିଗ୍ରୀ-ଡିପ୍ଲୋମା ଅନୁଯାୟୀ ଜ୍ଞାନଗରିମା ଆଉ ଗୋଟିଏ ପଟରେ । ଦୁଇଟି ଭିତରେ ବିଶେଷ ସମ୍ପର୍କ ରହୁନାହିଁ । ବେକରେ ପଡ଼ିଛି ଡିଗ୍ରୀ-ଡିପ୍ଲୋମାର ଘଣ୍ଟା, କିନ୍ତୁ ଅଧିକାଂଶ କ୍ଷେତ୍ରରେ ସେହି ଡିଗ୍ରୀ-ଡିପ୍ଲୋମାଧାରୀଙ୍କ ଭିତରଟା ଅବିଦ୍ୟା ବା ଅଳ୍ପବିଦ୍ୟାରେ ଥଣ୍ଟା । ପରୀକ୍ଷା ପାଶ୍ ପୂର୍ବକ ଡିଗ୍ରୀଲାଭ ସହିତ

ବିଧିବଦ୍ଧ ଅଧ୍ୟୟନ-ଅଧ୍ୟାପନାର ବିଶେଷ ସଂପର୍କ ରହୁ ନ ଥିବାରୁ ଏହି ଶୋଚନୀୟ ଅବସ୍ଥା ଦେଖା ଦେଇଛି । 'ଡିଗ୍ରୀ ପାଇବା' ଓ 'ଦିଆଯିବା' ବିଷୟରେ ଏବେ ଆମ ରାଜ୍ୟର ଚାରିଆଡ଼େ ଏକ ପରିହାସ ପ୍ରଚଳିତ ହୋଇ-ଯାଇଛି । ଆପଣ ଫାଷ୍ଟ କ୍ଲାସ୍‌ରେ ଏମ୍.ଏସ୍‌ସି. ପାଶ୍ କରିଛନ୍ତି ; ପଚାର ହେଉଛି—ଆପଣ ଫାଷ୍ଟ୍ କ୍ଲାସ୍ 'ପାଇଛନ୍ତି', ନା, ଆପଣଙ୍କୁ ଫାଷ୍ଟ କ୍ଲାସ୍ 'ଦିଆହୋଇଛି' ? ସେହିପରି—ଆପଣ ପିଏଚ୍.ଡ଼ି. 'ପାଇଛନ୍ତି' ନା ଆପଣଙ୍କୁ ପିଏଚ ଡ଼ି. 'ଦିଆହୋଇଛି' ? ଏ ପରିହାସର ତାତ୍ପର୍ଯ୍ୟ ଆପଣଙ୍କୁ ଫେଡ଼ି କହିବା ଲୋଡ଼ା ନାହିଁ ।

ନୋଟ୍ ବହି, 'ମେଡ୍ ଇଜି' ବା 'ପସିବଲ' (Possible), 'ସିଓର ସକ୍‌ସେସ୍' (Sure Success) ଗ୍ରନ୍ଥମାଳା ଏବେ ଛାତ୍ର ଛାତ୍ରୀଙ୍କ ଦ୍ୱାରା ବହୁଳ ଭାବରେ ବ୍ୟବହୃତ ହେଉଥିବାର ଦେଖାଯାଏ । ଏଭଳି ସୁଧାର ଗାଈର ଲାଙ୍ଗୁଡ଼ ଧରି ପରୀକ୍ଷା ବୈତରଣୀ ପାରି ହେବା ବଡ଼ ସହଜ ଓ ସୁବିଧାଜନକ ହୋଇଛି । ଜ୍ଞାନ-ବିଜ୍ଞାନର ମୂଳଗ୍ରନ୍ଥ ଓ ଆକର ଗ୍ରନ୍ଥସବୁ ପଢ଼ିବା ପାଇଁ ସମୟ କାହିଁ ? ଶକ୍ତି ବା ଧୈର୍ଯ୍ୟ କାହିଁ ? ତେଣୁ ଦୋଷତ୍ରୁଟି ଭୁଲଭ୍ରାନ୍ତି ଥିଲେ ବି ନୋଟ୍ ବହିଗୁଡ଼ିକ ବ୍ୟତୀତ ଆଉ ଗତ୍ୟନ୍ତର ନାହିଁ । ଛାତ୍ରଛାତ୍ରୀଙ୍କ ମଧ୍ୟରେ କି ଭଲ, କି ଖରାପ—ପ୍ରାୟ ସମସ୍ତେ ନୋଟ୍ ବହିଗୁଡ଼ିକର ଶରଣାଗତ । ବଜାରରେ ପ୍ରଚୁର ପରିମାଣରେ ମିଳୁଥିବା ସେହି ବହିମାନଙ୍କରେ ଲେଖକଙ୍କ ନାମ ନଜରରେ ପଡ଼େନା । 'ଜଣେ ଅଭିଜ୍ଞ ଅଧ୍ୟାପକ', 'ପ୍ରବୀଣ ଅଧ୍ୟାପକ ମଣ୍ଡଳୀ', କିମ୍ବା 'A Panel of Experienced Professors' ସାଧାରଣତଃ ସେହି ବହିସବୁର ଲେଖକ । ସେଗୁଡ଼ିକରେ ଥିବା ଭୁଲ୍‌ଭ୍ରାନ୍ତି, ଦୋଷତ୍ରୁଟି ସକାଶେ ସହଜରେ କାହା ମଥାରେ ଅଠା ବୋଳାଯାଇ ପାରିବ ନାହିଁ । ଆଉ, ସେହି ବହି ସବୁର ପ୍ରକାଶକମାନେ ତ 'ସରସ୍ୱତୀ'ଙ୍କୁ ବିକି ଭାର୍ଗି 'ଲକ୍ଷ୍ମୀ'ଙ୍କୁ ନିଜ ଆୟତ୍ତରେ ରଖିଛନ୍ତି ! ସେମାନଙ୍କ କେଶାଗ୍ର ସୁଦ୍ଧା କେହି ସ୍ପର୍ଶ କରି ପାରିବେ କି ? ବାସ୍ତବିକ, ମେଡ଼ଇଜି, ପସିବଲ, ନୋଟବହି ଆଦିରେ ବହୁ ଭୁଲ୍ ଭ୍ରାନ୍ତି ଦେଖା-ଯାଏ, ଯାହା ଛାତ୍ରଛାତ୍ରୀଙ୍କ ଦୃଷ୍ଟିରେ ସହଜରେ ଧରାପଡ଼େନା । ସେମାନେ ସେହି ସବୁ ଭୁଲ୍ ଭଟକା ସାଙ୍ଗରେ ଘେନି ପରୀକ୍ଷା ଦେବାକୁ ଯାଆନ୍ତି ଏବଂ

ପରୀକ୍ଷାରେ ପାଶ୍ କରନ୍ତି ମଧ୍ୟ । ଫଳରେ ଜ୍ଞାନାର୍ଜନ ବା ବିଦ୍ୟାଜ୍ଞର କ୍ଷେତ୍ରରେ ସେମାନେ ଦୁର୍ବଳ ବା ଅଯୋଗ୍ୟ ହୋଇ ରହି ଯାଆନ୍ତି ଏବଂ ସର୍ବଭାରତୀୟ ବା ଆନ୍ତର୍ଜାତିକ ସ୍ତରରେ ପଛରେ ପଡ଼ିଯାଆନ୍ତି ।

## ଶିକ୍ଷାର ମାନ ବା ଷ୍ଟାଣ୍ଡାର୍ଡ଼

ବିଦ୍ୟାର୍ଜନ ବା ଜ୍ଞାନାର୍ଜନ କ୍ଷେତ୍ରରେ ଅନ୍ୟମାନଙ୍କ ତୁଳନାରେ ଆମେ କେତେ ପଛରେ ପଡ଼ିଛୁ, ସେ ସଂପର୍କରେ ଏକ ସତ୍ୟ ଘଟଣା ଏଠାରେ ବ୍ୟକ୍ତ କରୁଛି । ପ୍ରାୟ କୋଡ଼ିଏ ବର୍ଷ ତଳର କଥା । ସେତେବେଳେ ଉତ୍କଳ କଲେଜର ଗଣିତ-ଶାସ୍ତ୍ର ବିଭାଗରେ ଶ୍ରୀଧର ପ୍ରସାଦ ମହାନ୍ତି—ଯିଏ ବର୍ତ୍ତମାନ କାନପୁର ଆଇ. ଆଇ. ଟି.ରେ ପ୍ରଫେସର ଭାବେ ଅବସ୍ଥାପିତ — ଜଣେ ଭଲ ଅଧ୍ୟାପକ ରୂପେ ଜଣାଶୁଣା ଥିଲେ । କଲିକତାଠାରେ ଅନୁଷ୍ଠିତ ଗଣିତ ଶାସ୍ତ୍ର ବିଷୟକ ଏକ ସେମିନାର ରେ ସେ ଅଂଶ ଗ୍ରହଣ କରୁଥିଲାବେଳେ ମାର୍କିନ୍ ଯୁକ୍ତରାଷ୍ଟ୍ରର କାଲିଫର୍ଣ୍ଣିୟା ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସରଙ୍କ ଦୃଷ୍ଟି ତାଙ୍କ ପ୍ରତି ଆକୃଷ୍ଟ ହେଲା । ଗୁଣଗ୍ରାହୀ ପ୍ରଫେସର୍ ଜଣକ ଶ୍ରୀଧର ବାବୁଙ୍କର ଗଣିତ ଶାସ୍ତ୍ରରେ ଉଚ୍ଚ ଗବେଷଣା ପାଇଁ ଆଗ୍ରହ ପ୍ରକାଶ କଲେ ଏବଂ ତାଙ୍କୁ କାଲିଫର୍ଣ୍ଣିୟା ବିଶ୍ୱବିଦ୍ୟାଳୟକୁ ନେଇଯିବାର ବ୍ୟବସ୍ଥା କରି ଦେଲେ । କାଲିଫର୍ଣ୍ଣିୟାରେ ପହଞ୍ଚିଲା ପରେ ଶ୍ରୀଧର ବାବୁଙ୍କୁ ଗବେଷଣା କରିବା ପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ସହସା ଅନୁମତି ଦେଲେ ନାହିଁ, ଯଦିଚ ଡକ୍ଟରେଟ୍ ଡିଗ୍ରୀ ପାଇଁ ଗବେଷଣା କରିବା ସକାଶେ ସର୍ବନିମ୍ନ ଯୋଗ୍ୟତା ଅର୍ଥାତ୍ ଏମ୍. ଏ. ଡିଗ୍ରୀ ଶ୍ରୀଧର ବାବୁଙ୍କର ଥିଲା । ଶ୍ରୀଧର ବାବୁ ଭାରତବର୍ଷୀୟ ଏକ ବିଶ୍ୱବିଦ୍ୟାଳୟରୁ ଅର୍ଥାତ୍ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ଡିଗ୍ରୀ ହାସଲ କରିଥିଲେ, ଯାହାକୁ କାଲିଫର୍ଣ୍ଣିୟା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ସ୍ୱୀକାର କରିବା ପାଇଁ କୁଣ୍ଠା ପ୍ରକାଶ କଲେ । ତେଣୁ ଶ୍ରୀଧର ବାବୁଙ୍କୁ ସେହି ବିଶ୍ୱବିଦ୍ୟାଳୟରୁ ପ୍ରଥମେ ଗଣିତଶାସ୍ତ୍ରରେ ଏମ୍. ଏ. ପାଶ୍ କରିବାକୁ ପଡ଼ିଲା । ସେଠାରେ ଏମ୍. ଏ. ପାଠ ପଢ଼ୁଥିଲାବେଳେ ଶ୍ରୀଧର ବାବୁ ଏହି ଆଲୋଚକଙ୍କୁ ପତ୍ର ଲେଖି ଜଣାଇ ଥିଲେ ଯେ— ଓଡ଼ିଶାରେ ଏମ୍. ଏ. ସିଲାବସ୍‌ରେ ସେ ଯେଉଁ ଗଣିତ ଶାସ୍ତ୍ର ପଢ଼ିଥିଲେ, ତାହା ସେଠାର ଆମେରିକାନ୍ ଛାତ୍ରଛାତ୍ରୀମାନେ ଅଣ୍ଡରଗ୍ରାଜୁଏଟ୍ ସ୍ତରରେ ଶେଷକରି

ଦେଇଛନ୍ତି । ସେଠାରେ ଏମ୍. ଏ. ଛାତ୍ରମାନେ ଯେଉଁ ଗଣିତ ଶାସ୍ତ୍ର ପଢୁଥିଲେ ତାହାକୁ ହୃଦୟଙ୍ଗମ କରିବା ତାଙ୍କ ପକ୍ଷରେ କଷ୍ଟକର ହେଉଥିଲା । ଏଥିରୁ ଆମର ଶିକ୍ଷାବିଦ୍‌ମାନେ ଉତ୍କଳ ଓ କାଲିଫର୍ଣିୟା ବିଶ୍ୱବିଦ୍ୟାଳୟର ଉଚ୍ଚ ଶିକ୍ଷାର ଷ୍ଟାଣ୍ଡାର୍ଡ୍‌ରେ ରହିଥିବା ତାରତମ୍ୟ ବୁଝି ପାରିବେ ।

ଯାହା ହେଉ, ଶ୍ରୀଧର ବାବୁ କଠିନ ପରିଶ୍ରମ କରି କାଲିଫର୍ଣିୟା ବିଶ୍ୱବିଦ୍ୟାଳୟର ଏମ୍. ଏ. ପାଠ ପଢ଼ିଲେ ଏବଂ ପରୀକ୍ଷା ପାଶ୍ କଲେ । ତେବେ ସୁଦ୍ଧା ତାଙ୍କର ଉଚ୍ଚତର ଗବେଷଣା କରିବାର ଯୋଗ୍ୟତା ବିଷୟରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଦ୍ୱିଧାହୀନ ହୋଇପାରିଲେ ନାହିଁ । ପିଏଚ୍. ଡ଼ି. ଡିଗ୍ରୀ ଉଦ୍ଦେଶ୍ୟରେ ଗବେଷଣା କରିବାକୁ ଅନୁମତି ପାଇବା ପାଇଁ ଶ୍ରୀଧର ବାବୁଙ୍କୁ ଆଉ ଥରେ ଆପଣା ଯୋଗ୍ୟତାର ପ୍ରମାଣ ଦେବାକୁ ପଡ଼ିଲା ; ଅର୍ଥାତ୍ ତାଙ୍କୁ ଆଉ ଏକ ଯୋଗ୍ୟତା ପ୍ରମାଣକାରୀ ବା କ୍ୱାଲିଫାଇଙ୍ଗ୍ ପରୀକ୍ଷା ଦେଇ ପାଶ୍ କରିବାକୁ ହେଲା । ତାହା ପରେ ଯାଇ ସେ ଗବେଷଣା କରିବାକୁ ସେଠାରେ ସୁଯୋଗ ପାଇଲେ ।

ଉଚ୍ଚ ଶିକ୍ଷାର ମାନ ବା ଷ୍ଟାଣ୍ଡାର୍ଡ୍ ବିଷୟରେ ତ ପାର୍ଥକ୍ୟ ରହିଛି ! ଏହି ଘଟଣାରୁ ଆଉ ଏକ କଥା ଜଣାଯାଉଛି ଯେ— ଉତ୍କଳ ବା ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ଉଚ୍ଚତର ଡିଗ୍ରୀ-ଡିପ୍ଲୋମା ଉପରେ ବିଦେଶରେ ଭଲ ଧାରଣା ନାହିଁ । ଆମର ଉଚ୍ଚ ଶିକ୍ଷା ଉପରେ ସେମାନେ ଆସ୍ଥା ସ୍ଥାପନ କରି ପାରୁନାହାନ୍ତି ବୋଧହୁଏ । ଅବଶ୍ୟ, ବହୁ ଭାରତୀୟ ଛାତ୍ର ବିଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ନିଜ ନିଜର ମେଧା ଓ ମନୀଷାର ପରିଚୟ ଦେଇଛନ୍ତି— ଆପଣା ଯୋଗ୍ୟତା ପ୍ରମାଣ କରିଛନ୍ତି । ତଥାପି ବିଦେଶରେ ଉଚ୍ଚ ଶିକ୍ଷାର ମାନ ଯେପରି ବୃଦ୍ଧିଲାଭ କରିଛି, ଆମ ଏଠାରେ ତାହା ହୋଇପାରି ନାହିଁ । ଜ୍ଞାନ ବିଜ୍ଞାନର ଚର୍ଚ୍ଚା ଓ ଗବେଷଣା କ୍ଷେତ୍ରରେ ଆମେରିକା, ଇଉରୋପର ଅଧିକାଂଶ ଉଚ୍ଚ ଶିକ୍ଷାୟତନ ଯେପରି ଅଗ୍ରଗତି କରିଛନ୍ତି, ଆମର ଅଧିକାଂଶ ଶିକ୍ଷାନୁଷ୍ଠାନର ତାହା ସମ୍ଭବ ହୋଇ ପାରି ନାହିଁ । ଆମର ଅଗ୍ରଗତି ଧୀର ମନ୍ଥର । ପାଶ୍ଚାତ୍ୟ ଦେଶ ତଥା ଆମେରିକାରେ ଏବେ ଜ୍ଞାନବିଜ୍ଞାନରେ ବିସ୍ଫୋରଣ ଘଟୁଥିଲାବେଳେ, ଆମେ ଏଠାରେ ତାହାରି କ୍ଷୀଣପ୍ରଭ ପ୍ରଦୀପଟିଏ ଜଳାଇ ରଖିଛୁ ମାତ୍ର ।

ବର୍ତ୍ତମାନ ପ୍ରଶ୍ନ ହେଉଛି—ଜ୍ଞାନାର୍ଜନ ବା ବିଦ୍ୟାର୍ଜ୍ଜନ କ୍ଷେତ୍ରରେ ଆମେ ଅନ୍ୟାନ୍ୟ ଦେଶ ତୁଳନାରେ ପଛରେ ପଡ଼ି ରହିବା କି ? ସାଧାରଣ ଆନ୍ତର୍ଜାତିକ ମାନ (Standard) ତଳେ ସ୍ଥାନ ପାଇବା କି ? ନୈବ ନୈବ ଚ । କୌଣସି ଶିକ୍ଷାବିଦ୍ ଓ ସୁରୁଚିପ୍ରେମୀ ବ୍ୟକ୍ତି ଏହାକୁ ସ୍ପୃହଣୀୟ ମନେ କରିବେ ନାହିଁ । ଜ୍ଞାନ ବିଜ୍ଞାନ, ଶିକ୍ଷା ଦୀକ୍ଷା କ୍ଷେତ୍ରରେ ଆମକୁ ଅନ୍ୟମାନଙ୍କର ସମକକ୍ଷ ବା ସମାନସନ୍ଧ ହେବାକୁ ପଡ଼ିବ—ସମର୍ଥ ଓ ଯୋଗ୍ୟ ହେବାକୁ ପଡ଼ିବ । ନୋହିଲେ ମୃତ୍ୟୁ ବା ବିଲୋପ-ସାଧନ । କେବଳ ଶରୀର ବା ଜୀବନ ଧାରଣ ଦିଗରୁ ନୁହେଁ; ଜ୍ଞାନ, ମେଧା ଓ ମନୀଷା ଦିଗରୁ ମଧ୍ୟ ଜାଳେ ଜାଳେ ଯୋଗ୍ୟତମର ଉଦ୍‌ବର୍ତ୍ତନ ହୋଇଥାଏ ।

## ଗବେଷଣା ଓ ଗ୍ରନ୍ଥାଦି ପ୍ରକାଶନ

ଜ୍ଞାନବିଜ୍ଞାନ କ୍ଷେତ୍ରରେ ଆମେ ଯେତେବେଳେ ସାଧାରଣ ଆନ୍ତର୍ଜାତିକ ମାନ (Standard) ତଳେ ରହିଥିବାର ଲକ୍ଷ୍ୟ କରୁଛୁ, ଆମର ତାହାହେଲେ ଉପସ୍ଥିତ କର୍ତ୍ତବ୍ୟ କଣ ? ଏ ଦିଗରେ ଆମ ଉପରେ ରହିଥିବା ଜାତି ବା ସମାଜକୁ ଆମ ନିଜ ସ୍ତରକୁ ତ ଖସାଇ ଆଣି ହେବ ନାହିଁ ! ସେପରି କରିବା ସମ୍ଭବ ନୁହେଁ ଏବଂ ତାହା ମୂର୍ଖତା ହେବ । ବରଂ ଆମେ ନିଜକୁ ସେହି ଉନ୍ନତ ସ୍ତରଯାଏଁ ଉଠାଇବା ବିବେକୀ କାର୍ଯ୍ୟ ହେବ । ଯଥା—




ଉପରବାଲକୁ ତଳକୁ ଖସାଇବା ନୁହେଁ, ନିଜକୁ ତଳୁ ଉପରକୁ ଉଠାଇବାହିଁ ବର୍ତ୍ତମାନ ଆମର ପ୍ରଧାନ କାର୍ଯ୍ୟ । ଶିକ୍ଷାଦୀକ୍ଷା କ୍ଷେତ୍ରରେ ଅନ୍ୟାନ୍ୟ ପ୍ରଗତିଶୀଳ ଜାତି ସହିତ ସମକକ୍ଷ ହେବାହିଁ ଏବେ ଆମର ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ଯେଉଁ କେତେକ ସୁପରିଚିତ ପନ୍ଥା ରହିଛି, ତାହା ଆମର ଅନୁସରଣୀୟ ।

ଗବେଷଣା ଉଚ୍ଚ ଶିକ୍ଷାର ଏକ ପ୍ରଧାନ ଅଙ୍ଗ । ଗବେଷଣା ବୋଇଲେ ଅନେକେ ପ୍ରାକୃତିକ ବିଜ୍ଞାନ ବା Natural Science କ୍ଷେତ୍ରର ଗବେଷଣାକୁ ବୁଝି ଥାଆନ୍ତି । କିନ୍ତୁ କଳା ଓ ମାନବୀୟ ବ୍ୟାପାର କ୍ଷେତ୍ରରେ ଗବେଷଣା (Humanistic Research) ମଧ୍ୟ ଅତ୍ୟାବଶ୍ୟକ । ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ 'ୟୁନିଭରସିଟି ଏଜୁକେସନ୍ କମିଶନ' (୧୯୪୮-୪୯) ନିଜ ରିପୋର୍ଟରେ ଏ କଥା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ଗବେଷଣା ବିଶ୍ୱବିଦ୍ୟାଳୟର ଡିଗ୍ରୀ ଡିପ୍ଲୋମା—ନିରପେକ୍ଷ ହୋଇପାରେ, କିମ୍ବା ଡିଗ୍ରୀ - ଡିପ୍ଲୋମା ଲାଭ ଉଦ୍ଦେଶ୍ୟରେ କରାଯାଇପାରେ । ବିଶ୍ୱର ଅଗ୍ରଗାମୀ ଦେଶମାନଙ୍କରେ ଥିବା ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଉଚ୍ଚ ଶିକ୍ଷାନୁଷ୍ଠାନ ଗୁଡ଼ିକରେ ଜ୍ଞାନବିଜ୍ଞାନର ନାନା ବିଭାଗରେ ଯେଉଁରି ଗବେଷଣା କାର୍ଯ୍ୟ ଚାଲିଛି ଏବଂ ନୂଆ ନୂଆ ତଥ୍ୟ ଓ ତତ୍ତ୍ୱ ସୃଷ୍ଟି / ଆବିଷ୍କାର ପାଇଁ ଯେପରି ପଣ୍ଡିତମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗିଛି, ସେ ବିଷୟରେ ଏ ଦେଶର କେହି କେହି ଅବହିତ ଥିବେ । ଆମ ଦେଶରେ ମଧ୍ୟ ଉଚ୍ଚଶିକ୍ଷା କ୍ଷେତ୍ରରେ ଗବେଷଣାର ଗୁରୁତ୍ୱ ନୀତିଗତ ଭାବେ ସ୍ୱୀକୃତ ହୋଇଛି । ବିଭିନ୍ନ ଏଜୁକେସନ୍ କମିସନ୍ ତଥା ବିଶିଷ୍ଟ ଶିକ୍ଷାବିତ୍‌ମାନେ ଗବେଷଣା ସଂପର୍କରେ ପ୍ରାୟ ଏକ ପ୍ରକାର ମତ ପ୍ରକାଶ କରିଛନ୍ତି । କବି ରବୀନ୍ଦ୍ରନାଥ ଠାକୁର ଥରେ ନିଜର ସ୍ୱଭାବ ସୁଲଭ ଭଙ୍ଗୀରେ କହିଥିଲେ—ବିଦ୍ୟାର ଫସଲ ଖାଲି ଜମେଇ ରଖିବା ନୁହେଁ ; ବିଦ୍ୟାର ଉଚ୍ଚ ମାନର ଫସଲ ଫଳାଇବାର କାର୍ଯ୍ୟ ମଧ୍ୟ ବିଶ୍ୱବିଦ୍ୟାଳୟ ହାତରେ । ଗବେଷଣା ଦ୍ୱାରା ହିଁ ସେହି କାର୍ଯ୍ୟ କରାଯିବ । ସେହିପରି ୟୁନିଭରସିଟି ଏଜୁକେସନ୍ କମିଶନ୍ ରିପୋର୍ଟରେ ବୋଲାଯାଇଛି—କଲେଜ୍ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକ-ଶିକ୍ଷିକାମାନଙ୍କର ବିଶେଷ ସୁବିଧାପ୍ରାପ୍ତ ଜୀବନ । ଗବେଷଣା କାର୍ଯ୍ୟ ପାଇଁ ଦୁଇଟି ମୌଳ ଉପାଦାନ – ଅବକାଶ ଓ ସ୍ଥିର ଶାନ୍ତ ଜୀବନ— ଉଭୟ ସେମାନଙ୍କର ରହିଛି । ସଞ୍ଚିତ ପ୍ରଚଳିତ ଥିବା ଜ୍ଞାନ ବିଜ୍ଞାନକୁ ସେମାନେ କେବଳ ବାଣ୍ଟି ଦେଇଯିବା ଉଚିତ ନୁହେଁ ; ପ୍ରକୃତ ଅର୍ଥରେ ସେମାନେ ନବ ନବ ଜ୍ଞାନ ବିଜ୍ଞାନର ସ୍ରଷ୍ଟା ହେବା ମଧ୍ୟ ଉଚିତ୍ । ୧୯୬୬ ମସିହାରେ ପ୍ରକାଶିତ ଏଜୁକେସନ୍ (କୋଠାରୀ) କମିଶନ୍ ରିପୋର୍ଟରେ ମଧ୍ୟ ସେଇ କଥା— ଆମର ବଡ଼ ବଡ଼ କଲେଜ୍ ଓ ବିଶ୍ୱବିଦ୍ୟାଳୟଗୁଡ଼ିକୁ ସ୍ନାତକୋତ୍ତର ଶିକ୍ଷା ଓ

ଗବେଷଣାରୁ ଶତକଡ଼ା ଅଣୀ ଭାଗର ଦାୟିତ୍ୱ ବହନ କରିବାକୁ ପଡ଼ିବ । ଗବେଷଣା—ଜ୍ଞାନ ବିଜ୍ଞାନର ବିଭିନ୍ନ ବିଷୟରେ ଗବେଷଣା ! ଗବେଷଣା ବ୍ୟତୀତ ଆଉ ଯେପରି ଗତ୍ୟନ୍ତର ନାହିଁ !

ଭାରତ ଭଳି ଏକ ଗ୍ରୀଷ୍ମ ମଣ୍ଡଳୀୟ ଦେଶରେ କୃମି ରୋଗର ପ୍ରାଦୁର୍ଭାବ ସମସ୍ତେ ଲକ୍ଷ୍ୟ କରୁଥିବେ । ଏହି ରୋଗ ପାଇଁ କଣ କିପରି ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯାଇପାରେ—କି କି ଆରୋଗ୍ୟକର ପଦକ୍ଷେପ ମଧ୍ୟ ନିଆଯାଇ-ପାରେ, ତାହା ସବୁ ଗବେଷଣା ଦ୍ୱାରା ହିଁ ନିରୂପିତ ହେବା ସମ୍ଭବ । ଆମର କୃଷିପ୍ରଧାନ ଦେଶରେ କି କି ଭଲ ଅମଳକ୍ଷମ ଫସଲ ଫଳାଯାଇପାରେ—ବନ୍ୟା, ମରୁଡ଼ି ଆଦି ପ୍ରାକୃତିକ ଦୁର୍ଯୋଗଗ୍ରସ୍ତ କୃଷିକୁ କିପରି ରକ୍ଷା କରାଯାଇ ପାରେ, ତାହା ସବୁ ଗବେଷଣା ଦ୍ୱାରା ସ୍ଥିରୀକୃତ ହେବା ବିଧେୟ । ଶ୍ରୀଜଗନ୍ନାଥଙ୍କୁ ଘେନି ଆମ ସଂସ୍କୃତିରେ ଏତେ ବଡ଼ ପ୍ରତିଷ୍ଠାନ, ଏତେ ବ୍ୟାପକ ଉତ୍ସବ ଅନୁଷ୍ଠାନମାନ କାହିଁକି ? ସେ ସବୁର ପାରମାର୍ଥିକ ତାତ୍ପର୍ଯ୍ୟ କଣ ? ଏବଂ ଆମର ସାଂପ୍ରତିକ ଜୀବନରେ ତାହା ସବୁ କେତେ ଦୂର ଉପଯୋଗୀ ? ଗବେଷଣା ଦ୍ୱାରା ଏହା ପ୍ରତିପାଦିତ ହେବା ସମ୍ଭବ । ଏବେ ସକଳ ପ୍ରକାର ଭାବପ୍ରକାଶ ପାଇଁ ଓଡ଼ିଆ ଭାଷା ସମର୍ଥ କି ନୁହେଁ ଏବଂ ବିଭିନ୍ନ ପ୍ରକାର ସାହିତ୍ୟ-ଶୈଳୀର ବାହନ ହେବା ସକାଶେ ଏହା କେତେଦୂର ଉପଯୁକ୍ତ, ତାହା ଗବେଷଣା ଦ୍ୱାରା ନିରୂପିତ ହେବା ବିଧେୟ । ବିଭିନ୍ନ ପ୍ରକାର ଜ୍ଞାନ ବିଜ୍ଞାନ — ତାହା ଶୁଦ୍ଧ ହେଉ ଅଥବା ଫଳିତ ହେଉ— ଗବେଷଣା ଦ୍ୱାରା ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇଥାଏ । ଗବେଷଣା ଜ୍ଞାନ-ବିଜ୍ଞାନର ଦିଗ୍‌ବଳୟ ସମ୍ପ୍ରସାରିତ କରିବା ସଙ୍ଗେ ସଙ୍ଗେ ପ୍ରକୃତି ଓ ଜୀବନର ନାନା ରହସ୍ୟ ଉଦ୍‌ଘାଟନ କରିଥାଏ । ଆଧୁନିକ ସଭ୍ୟ ଓ ସଂସ୍କୃତିବନ୍ତ ମଣିଷ ହିସାବରେ ଆମକୁ ତିଷ୍ଠି ରହିବାକୁ ହେଲେ, ବିଭିନ୍ନ ପ୍ରକାର ଜ୍ଞାନ ବିଜ୍ଞାନର ଗବେଷଣାକୁ ଛାଡ଼ି ହେବ ନାହିଁ । ଆମର ଉଚ୍ଚଶିକ୍ଷା ବ୍ୟବସ୍ଥାରେ ସେହି ଗବେଷଣା ଅଗ୍ରାଧିକାର ପାଇବା ଉଚିତ ।

ଆମର ଉଚ୍ଚଶିକ୍ଷା କ୍ଷେତ୍ରରେ ଗବେଷଣା ଏ ପର୍ଯ୍ୟନ୍ତ ଅଗ୍ରାଧିକାର ପାଇଥିବାର ଦେଖାଯାଏ ନାହିଁ । ଜ୍ଞାନ ବିଜ୍ଞାନର ବିଭିନ୍ନ ବିଭାଗରେ କିଛି କିଛି ଗବେଷଣା ହେଉଛି ସତ୍ୟ, କିନ୍ତୁ ତାହା ମୁଖ୍ୟତଃ ବିଶ୍ୱବିଦ୍ୟାଳୟର ଡିଗ୍ରୀଲାଭ

ପାଇଁ ଉଦ୍ଦିଷ୍ଟ—ଗବେଷଣା କରୁଥିବା ବ୍ୟକ୍ତିମାନଙ୍କ ଦାନାପାଣି, ମାନମର୍ଯ୍ୟାଦାର ସୁବିଧା ସହ ସଂପୃକ୍ତ । ନିଯୁକ୍ତି, ପ୍ରମୋସନ, ମାନ ମର୍ଯ୍ୟାଦା ଲାଭ ଉଦ୍ଦେଶ୍ୟରେ ଗବେଷଣା କରିବାରେ ଆପତ୍ତି ନାହିଁ । କିନ୍ତୁ ଗବେଷଣାର ଗାଭୀ ସେଇଠି ବନ୍ଧ୍ୟା ହୋଇ ରହି ଯାଉଛି । ଫଳପ୍ରସୂ ହେଉନାହିଁ । ଆପତ୍ତି କେବଳ ସେଇଥିପାଇଁ ।

ପ୍ରଚଳିତ ଥିବା ଜ୍ଞାନ ବିଜ୍ଞାନର ଅଭିବୃଦ୍ଧି ସାଧନ କରିବା—ଜୀବନ ଓ ଜଗତ୍ ସମ୍ପର୍କରେ ଧ୍ୟାନ ଧାରଣାର ଦିଗ୍‌ବଳୟ ସମ୍ପ୍ରସାରଣ କରିବା—ବିଭିନ୍ନ ବିଷୟରେ ନୂଆ ନୂଆ ତଥ୍ୟ ଓ ତତ୍ତ୍ୱ ପ୍ରତିପାଦନ କରିବା ଗବେଷଣାର ପ୍ରଧାନ ଉଦ୍ଦେଶ୍ୟ । ଜୀବନ ଓ ସମାଜ ପାଇଁ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ଗବେଷଣା ଉପଯୋଗୀ ହେବା ଲୋଡ଼ା । ମୋଟାମୋଟି ଭାବରେ କହିଲେ, ଗବେଷଣା ଯଦି ଫଳପ୍ରଦ ଓ ପ୍ରାସଙ୍ଗିକ ନ ହୁଏ, ତାହା ମୂଲ୍ୟହୀନ । ଆମ ରାଜ୍ୟର ତିନି ଚାରିଟି ବିଶ୍ୱବିଦ୍ୟାଳୟରେ କଳା, ବିଜ୍ଞାନ, ବାଣିଜ୍ୟ ଆଦି ବିଭିନ୍ନ କ୍ଷେତ୍ରରେ କିଛି କିଛି ଗବେଷଣା ଯେ ନ ହେଉଛି, ତାହା ନୁହେଁ । କିନ୍ତୁ ତନ୍ମଧ୍ୟରୁ ଅଧିକାଂଶ ଗବେଷଣା-କାର୍ଯ୍ୟ ଅର୍ଥହୀନ, ନିଷ୍ଫଳ ଓ ଅପ୍ରାସଙ୍ଗିକ ହୋଇ ପଡ଼ୁଛି । ବିଭିନ୍ନ ବିଶ୍ୱବିଦ୍ୟାଳୟର ବହି ଥାକଗୁଡ଼ିକ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ ଆମର ଅଧିକାଂଶ ଥେସିସ୍ କୀଟ ପତଙ୍ଗମାନଙ୍କର ଚମତ୍କାର ଆହାର ହେଉଛି ସିନା, କାହାରି ଉପଯୋଗିତାରେ ଆସୁ ନାହିଁ । ଗବେଷଣା-ଧର୍ମକୁ ଆଖିଠାର ମାରି ଦେଇ ଆମେ ବ୍ୟକ୍ତିଗତ ସୁବିଧା ସୁଯୋଗ କେବଳ ହାସଲ କରିବାରେ ଲାଗିଛୁ । ଏହା ଏକ ଶୋଚନୀୟ ବ୍ୟାପାର ।

ଗବେଷଣା ତ ଦୂରର କଥା, ଜ୍ଞାନ ବିଜ୍ଞାନ ବିଷୟକ ବିଭିନ୍ନ ଗ୍ରନ୍ଥ ବା ପତ୍ରିକା ପ୍ରକାଶ ବିଶ୍ୱବିଦ୍ୟାଳୟମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ, ଯାହା ଏବେ ସଂପୂର୍ଣ୍ଣ ଅବହେଳିତ । ବିଭିନ୍ନ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀର ପାଠ୍ୟପୁସ୍ତକ ବିଷୟ ଏଠାରେ ବୋଲଯାଉ ନାହିଁ, କିମ୍ବା ଛାତ୍ର ଛାତ୍ରୀମାନଙ୍କର ଆତ୍ମପ୍ରକାଶ ପାଇଁ ଉଦ୍ଦିଷ୍ଟ ବାର୍ଷିକ ମୁଖପତ୍ର ଓ ସାମୟିକ ପ୍ରବନ୍ଧ ସଂକଳନ କଥା ବି କୁହାଯାଉ ନାହିଁ । କୁହାଯାଉଛି—ଜ୍ଞାନଗର୍ଭକ ବିଭିନ୍ନ ବିଦ୍ୟାର ଗ୍ରନ୍ଥ ଓ ପତ୍ରିକା, କଥା, ଯାହା ସାଧାରଣତଃ ପଣ୍ଡିତ ଅଧ୍ୟାପକମାନଙ୍କ ଦ୍ୱାରା ରଚିତ

ମୂଲ୍ୟବାନ୍ ରଚନାବଳୀରେ ସମୃଦ୍ଧ ହୋଇଥାଏ । ଏହିଭଳି ପ୍ରକାଶନଗୁଡ଼ିକ ବିଶ୍ୱବିଦ୍ୟାଳୟର ଗୌରବ ଓ ମର୍ଯ୍ୟାଦା ବୃଦ୍ଧିରେ ସହାୟତା କରିଥାଏ ।

ଆମ ରାଜ୍ୟରେ ପ୍ରାଚୀନତମ ଆଧୁନିକ ବିଶ୍ୱବିଦ୍ୟାଳୟ ହେଉଛି—ଉତ୍କଳ ବିଶ୍ୱବିଦ୍ୟାଳୟ (୧୯୪୩) । ପ୍ରାୟ ଅର୍ଦ୍ଧଶତାବ୍ଦୀର ଏହି ପୁରୁଖା ଉଚ୍ଚଶିକ୍ଷାୟତନର ଅନୁରୂପ ପ୍ରକାଶନ ସଂଖ୍ୟା କେତେ ଜାଣନ୍ତି କି ? ଓଡ଼ିଆ ଓ ଇଂରାଜୀ ଭାଷାରେ ମୋଟ ୬୫ ଖଣ୍ଡ ମାତ୍ର । ଏଥିରେ ପୁଣି ରହିଛି କେତେଖଣ୍ଡି ପାଠ୍ୟପୁସ୍ତକ । ଏହି ୬୫ ଖଣ୍ଡ ଗ୍ରନ୍ଥ ସହିତ ପ୍ରାଚୀ ସମିତି କର୍ତ୍ତୃକ ପ୍ରକାଶିତ ୫୨ ଖଣ୍ଡ ଓଡ଼ିଆ ଗ୍ରନ୍ଥ ମିଶି ନ ଥିଲେ, ବିଶ୍ୱବିଦ୍ୟାଳୟ ପ୍ରକାଶନର ଦାରିଦ୍ର୍ୟ ଆହୁରି ପ୍ରକଟ ହୋଇପଡ଼ିଥାନ୍ତା । ପୂର୍ବରୁ ବିଶ୍ୱବିଦ୍ୟାଳୟ ପକ୍ଷରୁ ଇଂରାଜୀ ଭାଷାରେ କଳାବିଭାଗର ଗୋଟିଏ ଓ ବିଜ୍ଞାନ ବିଭାଗର ଗୋଟିଏ—ଏପରି ଯୋଡ଼ିଏ ଉଚ୍ଚକୋଟୀର ପତ୍ରିକା (ଜର୍ଣ୍ଣାଲ) ପ୍ରକାଶ ପାଉଥିଲା । ପତ୍ରିକା ଦୁଇଟି ବହୁକାଳରୁ ବନ୍ଦ ହୋଇଗଲାଣି ।

ଆମର ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ (୧୯୬୭) ଦୁଇଟିର ଗ୍ରନ୍ଥ ଓ ପତ୍ରିକା ପ୍ରକାଶନ ମଧ୍ୟ ସେହିପରି ସନ୍ତୋଷଜନକ ନୁହେଁ । ଆରମ୍ଭରୁ କିଛି ପ୍ରତିଶ୍ରୁତି ପାଇ ଆମେ ଉଭୟ ବିଶ୍ୱବିଦ୍ୟାଳୟଠାରୁ ଚବିଶ ବର୍ଷ ବୟସର ଯୌବନ ଦୀପ୍ତି ଆଶା କରୁଥିଲା ବେଳେ ଦେଖୁଛୁଁ କଣ ? ସମ୍ବଲପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ ସୁପରିଚିତ ଓଡ଼ିଆ ପତ୍ରିକା 'ସପ୍ତର୍ଷି'ର ପ୍ରକାଶନ ଅନିୟମିତ ହୋଇଛି ଏବଂ ଏହା ଅଚିରେ ବନ୍ଦ ହୋଇଯିବାର ଆଶଙ୍କା ରହିଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରକାଶିତ ଗ୍ରନ୍ଥ ସଂଖ୍ୟା ତେରଖଣ୍ଡି ମାତ୍ର । ତାହା ମଧ୍ୟରେ ପୁଣି ରହିଛି--ଚାରିଖଣ୍ଡି ଓଡ଼ିଆ ପାଠ୍ୟପୁସ୍ତକ ।

କେବଳ ଆମ ରାଜ୍ୟର ବିଶ୍ୱବିଦ୍ୟାଳୟ ନୁହେଁ ; ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ପ୍ରକାଶନ ସଂଖ୍ୟା କ୍ରମଶଃ କମି ହୋଇଯାଉଥିବାରୁ ନୂଆଦିଲ୍ଲୀସ୍ଥ 'ଏସୋସିଏସନ ଅବ୍ ଇଣ୍ଡିଯାନ୍ ଇଉନିଭରସିଟିଜ୍' ପକ୍ଷରୁ ବାରମ୍ବାର ଉଦ୍‌ବେଗ ପ୍ରକାଶ କରାଯାଇଛି । ଏସୋସିଏସନ ପକ୍ଷରୁ ପ୍ରକାଶିତ 'ଇଉନିଭରସିଟି ନିଉଜ୍' (University News) ପତ୍ରିକାର ଗୋଟିଏ ସଂଖ୍ୟାରେ କୁହାଯାଇଛି— ବିଶ୍ୱବିଦ୍ୟାଳୟ ସମୂହର ପ୍ରକାଶନ ବିକ୍ଷିପ୍ତ ଓ ଅନିୟମିତ ।

ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥାଦି ପ୍ରକାଶ ପ୍ରାୟ ହେଉ ନାହିଁ । × × ୧୮୫୭ ମସିହାରୁ (ସେହି ବର୍ଷ ଭାରତରେ ସର୍ବପ୍ରଥମେ କଲିକତା, ବମ୍ବେ ଓ ମାଡ୍ରାସ୍‌ଠାରେ ଆଧୁନିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା) ଏ ପର୍ଯ୍ୟନ୍ତ ବିଭିନ୍ନ ବିଶ୍ୱବିଦ୍ୟାଳୟର ପ୍ରକାଶନ ସଂଖ୍ୟା ୩୦ରୁ ୭୫୦ ମଧ୍ୟରେ । ମାଡ୍ରାଜ୍ ବିଶ୍ୱବିଦ୍ୟାଳୟ ଏ କ୍ଷେତ୍ରରେ ସମସ୍ତଙ୍କ ମଧ୍ୟରେ ଅଗ୍ରଣୀ । ଏହା ବ୍ୟତୀତ ବମ୍ବେ, ବାଙ୍ଗାଲୋର, କଲିକତା, ଆନ୍ଧ୍ର, ଗୁଜରାଟ, ଗୁରୁ ନାନକ ଦେବ, କର୍ଣ୍ଣାଟକ, ନାଗପୁର, ଓସମାନିଆ ଓ ପଞ୍ଜାବ ବିଶ୍ୱବିଦ୍ୟାଳୟ ଗ୍ରନ୍ଥ ପ୍ରକାଶ ଦିଗରେ ଭାରତର ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ଅପେକ୍ଷା ଅଗ୍ରଗତି କରିଛନ୍ତି । (୧୯୮୬ ଫେବୃଆରି ୮ ତାରିଖ ସଂଖ୍ୟା)

ପ୍ରସଙ୍ଗକ୍ରମେ ଏଠାରେ ଭାରତର ଏକ ବିଖ୍ୟାତ ବିଶ୍ୱବିଦ୍ୟାଳୟ କଥା ଉଲ୍ଲେଖ କରୁଛି । କବି ରବୀନ୍ଦ୍ରନାଥ ଶାନ୍ତିନିକେତନ ବିଦ୍ୟାଳୟକୁ 'ବିଶ୍ୱଭାରତୀ'ରେ (ଏବର ବିଶ୍ୱବିଦ୍ୟାଳୟ ନୁହେଁ) ପରିଣତ କଲାପରେ ସେଠାରେ ଗ୍ରନ୍ଥ ଓ ପତ୍ରିକା ପ୍ରକାଶ ପାଇଁ ବିଧିବଦ୍ଧ ଯୋଜନା କରିଥିଲେ । ବଙ୍ଗଳା, ଇଂରାଜୀ, ହିନ୍ଦୀ, ଓଡ଼ିଆ ଆଦି ଭାଷାରେ ବହୁ ମୂଲ୍ୟବାନ୍ ଗ୍ରନ୍ଥ କାଳକ୍ରମେ ସେଠାରୁ ପ୍ରକାଶ ପାଇବାକୁ ଲାଗିଲା । 'ବିଶ୍ୱଭାରତୀ ପତ୍ରିକା' ଓ Visva-Bharati Quarterly ନାମରେ ଯଥାକ୍ରମେ ବଙ୍ଗଳା ଓ ଇଂରାଜୀ ଭାଷାରେ ଦୁଇଟି ଉଚ୍ଚକୋଟୀର ପତ୍ରିକା ନିୟମିତ ପ୍ରକାଶ ପାଇଲା । 'ବିଶ୍ୱବିଦ୍ୟା ସଂଗ୍ରହ' ଓ 'ଲୋକ ଶିକ୍ଷା ଗ୍ରନ୍ଥମାଳା'ରେ ବିଭିନ୍ନ ବିଷୟକ ଉପାଦେୟ ତଥ୍ୟପୂର୍ଣ୍ଣ ଗ୍ରନ୍ଥ ପ୍ରକାଶିତ ହେଲା । ଜ୍ଞାନ ବିଜ୍ଞାନ ପ୍ରସାରରେ ଏହି ଗ୍ରନ୍ଥଗୁଡ଼ିକର ଉପଯୋଗୀ ଭୂମିକା ଉଲ୍ଲେଖଯୋଗ୍ୟ । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ 'ବିଶ୍ୱଭାରତୀ' ପରିଣତ ହେଲା ୧୯୫୧ ମସୀହାରେ । ତା'ପରେ କ୍ରମେ ବିଶ୍ୱବିଦ୍ୟାଳୟ ପ୍ରକାଶନ କ୍ଷେତ୍ରରେ ଶିଥିଳତା ଦେଖା ଦେଲା । ଏବେ ଗବେଷଣା ଗ୍ରନ୍ଥ ପ୍ରକାଶ ଊଣା ହୋଇଯାଇଛି ଏବଂ 'ବିଶ୍ୱବିଦ୍ୟା ସଂଗ୍ରହ' ଗ୍ରନ୍ଥମାଳାର ପ୍ରକାଶନ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଛି ।

## ମୂଲ୍ୟାୟନ ଓ ପରୀକ୍ଷାପଦ୍ଧତି

ଉଚ୍ଚଶିକ୍ଷା କ୍ଷେତ୍ରରେ ମୂଲ୍ୟାୟନ ଲୋଡ଼ା । ଛାତ୍ରଛାତ୍ରୀଙ୍କ ଅର୍ଜିତ ଜ୍ଞାନ ତଥା ତଜ୍ଜନିତ ହୃଦୟ ମନର ବିକାଶର ଏହି ମୂଲ୍ୟାୟନ ଏକ ଧାରବାହିକ

କାର୍ଯ୍ୟ—ପ୍ରତି ମାସରେ ଏପରି କି ପ୍ରତି ସପ୍ତାହରେ କରାଯିବା ଉଚିତ—ବର୍ଷକେ ଥରେ ବା ଦୁଇବର୍ଷକେ ଥରେ ହେବା ଉଚିତ ନୁହେଁ । ଏ ବିଷୟରେ ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କର ମତ ସ୍ପଷ୍ଟ । ଏହି ମୂଲ୍ୟାୟନ ପାଇଁ ବହୁକାଳ ହେଲା ଯେଉଁ ପରୀକ୍ଷା-ପଦ୍ଧତି ଆମ ଦେଶରେ ପ୍ରଚଳିତ ଅଛି, ତାହା ତ୍ରୁଟିପୂର୍ଣ୍ଣ ଏବଂ ଅନାବଶ୍ୟକ ବୋଲି ଏବେ ସମସ୍ତେ ଉପଲବଧି କରୁଛନ୍ତି । ଏହି ପରୀକ୍ଷା ପଦ୍ଧତିରେ ବିଦ୍ୟାର୍ଥୀମାନଙ୍କର ଜ୍ଞାନ, ମାନସିକ ଦକ୍ଷତା ଏବଂ ସାଧୁତା, ନିଷ୍ଠାପରତା, କଷ୍ଟସହିଷ୍ଣୁତା ଆଦି ଚରିତ୍ରିକ ବୈଶିଷ୍ଟ୍ୟର ଯଥାର୍ଥ ମୂଲ୍ୟାୟନ ହୋଇପାରୁ ନାହିଁ । ଏଥିରେ କେବଳ ଛାତ୍ରଛାତ୍ରୀମାନଙ୍କର ସ୍ମରଣ ଶକ୍ତି, ଲେଖିବାର କୌଶଳ ଏବଂ ପାଠ୍ୟପୁସ୍ତକଗତ ବିଦ୍ୟାର ପରୀକ୍ଷା କରଯାଉଛି । ସର୍ବୋପରି ଦେଖା ଦେଇଛି—ଗୁରୁତର ପରୀକ୍ଷା ପରିଚାଳନା-ସମସ୍ୟା । କଲେଜ ଓ ବିଶ୍ୱବିଦ୍ୟାଳୟର ସଂଖ୍ୟାବୃଦ୍ଧି, ତହିଁରେ ଅଧ୍ୟୟନ-ଅଧ୍ୟାପନା ପାଇଁ ବହୁ ବିଭିନ୍ନ ବିଷୟର ପ୍ରବର୍ତ୍ତନ, ଏନୁଆଲ୍, ସପ୍ଲିମେଣ୍ଟାରି, ରିପିଟ୍, ବ୍ୟାକ୍ ପେପର ଆଦି ବହୁପ୍ରକାର ପରୀକ୍ଷାର ପ୍ରଚଳନ ଏବଂ ପ୍ରଶ୍ନପତ୍ର ପ୍ରସ୍ତୁତିଠାରୁ ଆରମ୍ଭ କରି ଫଳପ୍ରକାଶ ପର୍ଯ୍ୟନ୍ତ ପରୀକ୍ଷା ବ୍ୟାପାର ସହ ବହୁ ବିଭିନ୍ନ ଶ୍ରେଣୀର ସନ୍ଦେହ-ଯୁକ୍ତ ବ୍ୟକ୍ତିମାନଙ୍କ ସଂପର୍କ ସମୁଦାୟ ପରୀକ୍ଷା-ପଦ୍ଧତିକୁ ଏକ ପ୍ରକାର ପତମାନ ଅବସ୍ଥାରେ ପହଞ୍ଚାଇ ଦେଇଥିବାର ଦେଖାଯାଉଛି ।

ପରୀକ୍ଷା – ହା ସର୍ବାର୍ଥସାଧିକା ପରୀକ୍ଷା ! ତାଙ୍କରି ଆବାହନ, ଆଗମନ, ଆଧିପତ୍ୟ ଓ ପୁନ୍‌ରାଗମନ ପାଇଁ ବର୍ଷସାର ଚାଲିଛି ଆମର ଅପ୍ରାଣ ଆୟୋଜନ । ଅଧ୍ୟୟନ ଅଧ୍ୟାପନାକୁ ଅତ୍ୟନ୍ତ ଗୌଣ କରିଦେଇ ଆମେ ନିଜର ଅଧିକାଂଶ-ଶକ୍ତି ଓ ସମୟ ଦେଇ ପରୀକ୍ଷା-ପରିଚାଳନାରେ ହିଁ ଲାଗିଯାଉଛୁ । ଏବେ ଆମର ଉଚ୍ଚଶିକ୍ଷାୟତନ ଗୁଡ଼ିକୁ ଗୋଟିଏ ଗୋଟିଏ 'ପରୀକ୍ଷା ପରିଚାଳନା ପ୍ରତିଷ୍ଠାନ' ବୋଇଲେ ଅତ୍ୟୁକ୍ତି ବା ଅତିରଞ୍ଜନ ହେବ ନାହିଁ । ପାଠ ପଢ଼ାଇବା ଉପରେ ନୁହେଁ, ପରୀକ୍ଷା କରଇବା ଉପରେ ହିଁ ପ୍ରାଧାନ୍ୟ ! ପରୀକ୍ଷାକୁ ଅଯଥା ଗୁରୁତ୍ୱ ଦେବା ଫଳରେ ଉଚ୍ଚଶିକ୍ଷାର ଅତ୍ୟାବଶ୍ୟକ ଦିଗଗୁଡ଼ିକୁ ଅବହେଳା କରା-ହେଉଛି । ଶିକ୍ଷାଦାନ ନ କରି ପରୀକ୍ଷା ଗ୍ରହଣ କରାଯିବ କିପରି—ତାହା ବିଚାର କରି କେହି ଦେଖୁଛନ୍ତି କି ? ବସ୍ତୁତଃ ଉନ୍ନତ ଶିକ୍ଷା-ବ୍ୟବସ୍ଥାରେ ପରୀକ୍ଷା ଏକ ଗୌଣକାର୍ଯ୍ୟ–ଏକ ତୁଚ୍ଛ ବ୍ୟାପାର । ପରୀକ୍ଷା, ଶିକ୍ଷଣୀୟ ବିଷୟର ଦିଗ୍‌ବଳୟ

ଏବଂ ଛାତ୍ରଛାତ୍ରୀମାନଙ୍କ ବିଦ୍ୟାର୍ଜନ ବା ଶିକ୍ଷାଲାଭର ସାମର୍ଥ୍ୟକୁ ସଙ୍କୁଚିତ କରିଦିଏ । ସେଥିପାଇଁ କବି ରବୀନ୍ଦ୍ରନାଥ ଠାକୁର ଶିକ୍ଷାବ୍ୟବସ୍ଥାରେ ପରୀକ୍ଷା ପ୍ରତି ଅଶ୍ରଦ୍ଧା ପ୍ରକାଶପୂର୍ବକ ଶାନ୍ତିନିକେତନଠାରେ ସ୍ୱପ୍ରତିଷ୍ଠିତ ବିଶ୍ୱଭାରତୀରେ ଗତାନୁଗତିକ ଭାବରେ ପରୀକ୍ଷାର ପ୍ରଚଳନ କରି ନ ଥିଲେ । ଏ ସମ୍ପର୍କରେ ରବୀନ୍ଦ୍ରନାଥଙ୍କ ଅଭିମୁଖ୍ୟ, ୧୯୨୩ ମସାହାରେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ସାର୍ ଆଶୁତୋଷ ମୁଖାର୍ଜିଙ୍କୁ ଲେଖିଥିବା ଏକ ପତ୍ରରୁ ସ୍ପଷ୍ଟ ଜଣାପଡ଼େ । ବଙ୍ଗଳା ଭାଷାରେ ଲେଖା ସେହି ପତ୍ରଟିର ଅବିକଳ ଓଡ଼ିଆ ଅନୁବାଦ ଏଠାରେ ଉପସ୍ଥାପିତ କରୁଛି—

"ବହୁମାନ ଭାଜନେଷୁ— ଜୋଡ଼ାସାଁକୋ, କଲିକତା

ସାଦର ସମ୍ଭାଷଣ ପୂର୍ବକ ନିବେଦନ ।

କଲିକତା ବିଶ୍ୱବିଦ୍ୟାଳୟ ଏମ୍: ଏ: ପରୀକ୍ଷାରେ ବଙ୍ଗଳା ସାହିତ୍ୟର ଅନ୍ୟତମ ପରୀକ୍ଷକ ପଦ ଗ୍ରହଣ କରିବା ପାଇଁ ଯେତେବେଳେ ମୋ ପାଖକୁ ପ୍ରସ୍ତାବ ଆସିଲା, ସେତେବେଳେ ତାହା ଗ୍ରହଣ ସମ୍ବନ୍ଧରେ ମୋ ମନରେ ଦ୍ୱିଧା ଜନ୍ମିଥିଲା । କାରଣ ଏହି କାର୍ଯ୍ୟରେ ମୁଁ ସଂପୂର୍ଣ୍ଣ ଅନଭିଜ୍ଞ । ତାହା ବ୍ୟତୀତ ମୋଟାମୋଟି ପରୀକ୍ଷା ବ୍ୟାପାରଟା ଉପରେ ହିଁ ମୋର ଅଶ୍ରଦ୍ଧା ଅଛି । ଯାହାହେଉ, ଏହି ପ୍ରସ୍ତାବ ଉପଲକ୍ଷ୍ୟେ ଆପଣ ମୋ ପ୍ରତି ସମାଦର ପ୍ରକାଶ କରିଛନ୍ତି, ଏହା ଭାବି ସଂକୋଚ ସତ୍ତ୍ୱେ ମୁଁ ତାହା ସ୍ୱୀକାର କରି ନେଇଥିଲି ।

ତଦନୁସାରେ ଦୀନେଶ ବାବୁ ଯେତେବେଳେ ମୋ ନିକଟରେ କେତୋଟି ପ୍ରଶ୍ନ ରଚନା କରି ଉପସ୍ଥାପିତ କଲେ, ସେତେବେଳେ ଦେଖାଗଲା—ସେଗୁଡ଼ିକ କେତେଖଣ୍ଡି ପାଠ୍ୟପୁସ୍ତକକୁ ଆଶ୍ରୟ କରି ପ୍ରସ୍ତୁତ ହୋଇଛି । ଯେଉଁମାନେ ଏହି ସବୁ ଗ୍ରନ୍ଥ ନେଇ ଶିକ୍ଷକତା କରନ୍ତି, ସେମାନେ ଏଭଳି ପରୀକ୍ଷକତାର ଯୋଗ୍ୟ ପାତ୍ର । ମୁଁ ସେହି ଗ୍ରନ୍ଥଗୁଡ଼ିକ ଭଲ କରି ପଢ଼ି ନାହିଁ, ସେଗୁଡ଼ିକର ବିଷୟବସ୍ତୁ ସମ୍ବନ୍ଧରେ ମଧ୍ୟ ମୋର ଯଥୋଚିତ ପରିଚୟ ନାହିଁ । ଅର୍ଥାତ୍ ଯେଉଁମାନଙ୍କୁ ପରୀକ୍ଷା କରାହେଉଛି, ମୁଁ ସେମାନଙ୍କଠାରୁ ବି ପରୀକ୍ଷଣୀୟ ବିଷୟରେ ଅଳ୍ପ

ଶିକ୍ଷିତ । ଏପରି ସ୍ଥଳେ ଏଭଳି କାର୍ଯ୍ୟଭାର ଗ୍ରହଣ ମୋ ପକ୍ଷରେ ଅନୁଚିତ । ଅତଏବ ଆପଣଙ୍କ ପାଖରେ ମୋର ସାନୁନୟ ଆବେଦନ ଏହି ଯେ—ଏହିଂ ପଦରୁ ମୋତେ ନିଷ୍କୃତି ଦେବେ ଏବଂ ଏଭଳି କାର୍ଯ୍ୟରେ ମୋତେ ଅକ୍ଷମ ଜାଣିହିଁ କ୍ଷମା କରିବେ । ଇତି ୧୧ ଆଷାଢ଼ ୧୩୩୦ ।

ଭବଦୀୟ

ଶ୍ରୀ ରବୀନ୍ଦ୍ରନାଥ ଠାକୁର"

ଏଠାରେ ଏହା ଉଲ୍ଲେଖନୀୟ ଯେ— କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେଲ ପରେ (୧୯୫୧) ବିଶ୍ୱଭାରତୀରେ ବିଧିବଦ୍ଧ ପରୀକ୍ଷାପଦ୍ଧତି ଅନୁସୃତ ହୋଇଛି ।

ପ୍ରାୟ ୪୦ ବର୍ଷ ତଳେ ଡଃ ରାଧାକୃଷ୍ଣନ୍ଙ୍କ ଅଧ୍ୟକ୍ଷତାରେ ଗଠିତ 'ଇଉନିଭରସିଟି ଏଜୁକେଶନ୍ କମିସନ୍' ପ୍ରଚଳିତ ପରୀକ୍ଷା ପଦ୍ଧତିକୁ ଭାରତୀୟ ଶିକ୍ଷାର "ଏକ ନିକୃଷ୍ଟତମ ଅଙ୍ଗ" ବୋଲି ଅଭିହିତ କରିଥିଲେ । କମିସନ୍ଙ୍କ ଭାଷାରେ "ବିଭିନ୍ନ ବିଶ୍ୱବିଦ୍ୟାଳୟ ପରିଦର୍ଶନ କଲାବେଳେ ଆମେ ଉଭୟ ଛାତ୍ର ଓ ଶିକ୍ଷକମାନଙ୍କଠାରୁ ଶୁଣିଲୁଁ ସେଇ ଅସରନ୍ତି କାହାଣୀ—ପରୀକ୍ଷା କିପରି ଶିକ୍ଷାର ଏକମାତ୍ର ଲକ୍ଷ୍ୟ ଓ ଉଦ୍ଦେଶ୍ୟରେ ପରିଣତ ହୋଇଛି ; ସକଳ ଶିକ୍ଷା-ଦୀକ୍ଷା କିପରି ସେହି ପରୀକ୍ଷାଧୀନ ବ୍ୟାପାର ହୋଇଉଠିଛି ; ପରୀକ୍ଷା କିପରି ଶିକ୍ଷକ ଓ ଛାତ୍ରମାନଙ୍କର ସମସ୍ତ ଉଦ୍‌ଯୋଗ-କର୍ମ-ପ୍ରବୃତ୍ତି ନଷ୍ଟ କରିଦେଉଛି ; ତାହା କିପରି ପୁଣି ଖାମ୍‌ଖିଆଲୀ, ଅସ୍ପଷ୍ଟ, ଅକାର୍ଯ୍ୟକର ଏବଂ ଆସ୍ଥାସ୍ଥାପନର ଅଯୋଗ୍ୟ ; ସର୍ବୋପରି କିପରି ତାହା ବିଶ୍ୱବିଦ୍ୟାଳୟ ଜୀବନର ନୈତିକ ମାନକୁ କଳୁଷିତ କରିବା ଦିଗରେ ପ୍ରବଣତା ପ୍ରକାଶ କରୁଛି ।"

(In our visits to the Universities we heard, from teachers, and students alike, the endless tale of how examinations have become aim and end of education, how all instruction is subordinated to them, how they kill all initiative in the teacher and the student, how capricious, invalid, unreliable and inadequate they are, and how they tend to corrupt the moral standards of University life.—The Report of the University Education Commission, Vol. I (1950), Page—328.)

ଗ୍ରିଶ ବର୍ଷ ତଳେ ପରୀକ୍ଷାପଦ୍ଧତିର ସଂସ୍କାର ପାଇଁ କମିସନ୍ ଯେଉଁ ଆହ୍ୱାନ ଦେଇଥିଲେ, ସେଥିପ୍ରତି ଆମେ କର୍ଣ୍ଣପାତ କରି ନାହୁଁ । ପରେ "କୋଠାରୀ କମିସନ" (୧୯୬୪) ଅନୁରୂପ ସଂସ୍କାର ପାଇଁ ସୁପାରିଶ କରିଥିଲେ ହେଁ, ତାହା ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରି ନାହିଁ । ସେହି ପ୍ରଚଳିତ ପଦ୍ଧତିର ସଂକଟ-ସଂକୁଳ ଶଗଡ଼ ଗୁଳାରେ ଆମେ ଗ୍ରଳିଛୁଁ ସମସ୍ତେ । କଣ ଏହାର କାରଣ ? କାହିଁକି ଆମେମାନେ ଗୋଳିଆ ପାଣିରେ ଘାଣ୍ଡିହେବାକୁ ସୁଖ ପାଉଛୁଁ ? ଏହାର ବିଭିନ୍ନ କାରଣ ମଧ୍ୟରେ ଗୋଟିଏ ବଡ଼ କାରଣ ହେଉଛି—ଆମମାନଙ୍କର ନ୍ୟସ୍ତସ୍ୱାର୍ଥ । ପ୍ରଚଳିତ ଧାରାରେ ଯେତେ ପରୀକ୍ଷା ହେବ, ଆମର ସେତେ ଲାଭ । କାର୍ଯ୍ୟଗୁଡ଼ାକ କଣ ଜଣା ? ସୁପରିଟେଣ୍ଡେଣ୍ଟ୍, ଡେପୁଟି ସୁପରିଟେଣ୍ଡେଣ୍ଟ୍, ଇନ୍‌ଭିଜିଲେଟର, ପରୀକ୍ଷାକେନ୍ଦ୍ର ସୁପରଭାଇଜର; କୋଶ୍ଚେନ୍-ସେଟର, ମଡ଼ରେଟର, କଣ୍ଡକ୍ଟିଂ ବୋର୍ଡ ମେମ୍ବର, ଚିଫ୍ ଏକଜାମିନର, ଆସିଷ୍ଟାଣ୍ଟ ଏକ୍‌ଜାମିନର୍, ସ୍କ୍ରୁଟିନାଇଜର୍, ଭେଲୁଏସନ୍ ଜୋନ ସୁପରଭାଇଜର୍, ଡେପୁଟି ଜୋନ୍ ସୁପରଭାଇଜର, ଇତ୍ୟାଦି ଇତ୍ୟାଦି । ଆମ ମଧ୍ୟସ୍ଥ ଅଧିକାଂଶ ଅଧ୍ୟାପକଙ୍କର ପକ୍ଷୀ ସେହି ଅଠାକାଠି ପିଞ୍ଜରାରେ ଏପରି ଲାଖିଯାଇଛି ଯେ ତହିଁରୁ ମୁକୁଳି ଯିବା ସହଜ ହେଉ ନାହିଁ । ସେହିଭଳି ପରୀକ୍ଷା ସଂପର୍କିତ କାଗଜପତ୍ର ଠିକ୍ କରିବା, ପରୀକ୍ଷା-ହଲରେ ସିଟ୍ ପକାଇବା, ପରୀକ୍ଷାର୍ଥୀ-ମାନଙ୍କୁ ଖାତା, ସୂତା, ପାଣି ଇତ୍ୟାଦି ଯୋଗାଇବା, ଦପ୍ତରି କାର୍ଯ୍ୟ, ଫାଟକ ଜଗିବା ଭଳି ବହୁ କାର୍ଯ୍ୟ ରହିଛି ଅଧିକାଂଶ ତୃତୀୟ ଓ ଚତୁର୍ଥ ଶ୍ରେଣୀର କର୍ମଚାରୀ ବନ୍ଧୁଙ୍କ ପାଇଁ । ପରୀକ୍ଷାକାର୍ଯ୍ୟରେ ଲାଗି ଗୋଟିଏ ଶିକ୍ଷାୟତନର ଉପରଠାରୁ ତଳ ପର୍ଯ୍ୟନ୍ତ ଅଧିକାଂଶ ଶିକ୍ଷକ ଓ ଶିକ୍ଷାକର୍ମୀ ଯେତେବେଳେ ଉଣାଅଧିକେ ହାତଚିକ୍‌କଣ କରିପାରୁଛନ୍ତି, ସୁଯୋଗ ଛାଡ଼େ କିଏ ? ଏତ ଗଲା ବିଶ୍ୱବିଦ୍ୟାଳୟ ପରୀକ୍ଷାଗୁଡ଼ିକ କଥା ! ବଡ଼ ବଡ଼ କଲେଜମାନଙ୍କରେ ତଦୁପରି ରହିଛି—ବ୍ୟାଙ୍କ୍, ଏଲ୍. ଆଇ. ସି., ପବ୍ଲିକ୍ ସର୍ଭିସ୍ କମିସନ୍ ଆଦି ବିଭିନ୍ନ ପ୍ରକାର ବହୁ ପରୀକ୍ଷା—ମେଡ଼ିକାଲ୍, ଇଞ୍ଜିନିୟରିଂ, ଏଗ୍ରିକଲ୍‌ଚର କଲେଜ-ମାନଙ୍କର ଏଣ୍ଟ୍ରାନ୍‌ସ ଟେଷ୍ଟ୍ । ଯେତେ ପରୀକ୍ଷା ସେତେ ପଇସା ! ନଜିର୍ ଅଛି—ଜଣେ ଅଧ୍ୟାପକ କଟକର ଏକ କଲେଜରେ ଦିନକ ଭିତରେ ଫାଷ୍ଟ୍ ସିଟିଙ୍ଗ୍ ଇନ୍‌ଭିଜିଲେସନ ଡିଉଟି କରି ସାରି, ସେହି କଲେଜର ଜୋନାଲ୍

ଭେଲୁଏସନ୍ ସେଣ୍ଟର୍‌ରେ ଦଶ ଖଣ୍ଡ ପରୀକ୍ଷା ଖାତା ଦେଖି କଟକରୁ ଭୁବନେଶ୍ୱର ଯାଇଁ. ବାଣୀବିହାର କୋନାଲ୍ ଭେଲୁଏସନ୍ ସେଣ୍ଟର୍‌ରେ ପୁଣି ଦଶ ଖଣ୍ଡ ପରୀକ୍ଷାଖାତା ଦେଖିଛନ୍ତି ।

ଏହି ନ୍ୟସ୍ତସ୍ୱାର୍ଥକୁ ଆମେ ଜଳାଞ୍ଜଳି ଦେଇ ପାରିଲେ, ପ୍ରଚଳିତ ପରୀକ୍ଷା ପଦ୍ଧତିର ସଂସ୍କାର-ପଥ ପରିଷ୍କାର ହୋଇଯିବ । ପରୀକ୍ଷାଖାତା ଦେଖିବା ଲାଗି ପରୀକ୍ଷକମାନଙ୍କୁ କୌଣସି ପାରିଶ୍ରମିକ ନ ଦେବାକୁ ପଚିଶ ବର୍ଷ ତଳେ କୋଠାରୀ କମିସନ୍ କାହିଁକି ସୁପାରିଶ୍ କରିଥିଲେ, ତାହା ଆମକୁ ହୃଦୟଙ୍ଗମ କରିବାକୁ ହେବ ।

ଉଚ୍ଚଶିକ୍ଷା କ୍ଷେତ୍ରରେ ମୂଲ୍ୟାୟନ ପାଇଁ ପରୀକ୍ଷାକୁ ସର୍ବନିମ୍ନ ସ୍ଥାନ ଦେବାକୁ ପଡ଼ିବ । ପରୀକ୍ଷା ଉଭୟ ଲିଖିତ ଓ ମୌଖିକ ଭାବରେ ହେବ ଏବଂ ଶିକ୍ଷାଦାନ ସଙ୍ଗେ ସଙ୍ଗେ ଗୋଟିଏ ଶିକ୍ଷାବର୍ଷ ମଧ୍ୟରେ ବାରମ୍ବାର ତାହା ହୋଇ ଚାଲିଥିବ । ବହିଃ ପରୀକ୍ଷାଠାରୁ ଛାତ୍ରଛାତ୍ରୀମାନଙ୍କର ଆଭ୍ୟନ୍ତରୀଣ ପରୀକ୍ଷାକୁ ଗୁରୁତ୍ୱ ଦିଆଯିବ । ମୁଖ୍ୟତଃ ଶିକ୍ଷାଦାନୀ ଶିକ୍ଷକମାନଙ୍କ ଦ୍ୱାରା ହିଁ ଏପରି ଆଭ୍ୟନ୍ତରୀଣ ପରୀକ୍ଷା କରାଯିବ । ସେଥିପାଇଁ ଶିକ୍ଷକମାନଙ୍କଠାରେ ନିଷ୍ଠା, ସାଧୁତା ଓ ସଚ୍ଚୋଟପଣ ଅତ୍ୟାବଶ୍ୟକ । କେଇବର୍ଷ ତଳେ ଉଚ୍ଚଶିକ୍ଷା ସ୍ତରରେ ଆମେ ସେମିଷ୍ଟର୍ ସିଷ୍ଟମ୍ ଓ ଆଭ୍ୟନ୍ତରୀଣ ମୂଲ୍ୟାଙ୍କନ ରୀତି ପ୍ରବର୍ତ୍ତନ କରିଥିଲୁଁ । ତାହା ଉଠାଇଦେଲୁଁ କାହିଁକି, ଅନେକ ହୁଏତ ଜାଣିଥିବେ । ଅଯଥା ବର୍ଦ୍ଧିତ ମାର୍କ୍ ଦେବା, ପକ୍ଷପାତ ବିଚାର କରିବା ଆଦି ଏ କ୍ଷେତ୍ରରେ କେତେକ ଇତର କାର୍ଯ୍ୟ କରିବା ପାଇଁ ଆମେ ପଶ୍ଚାତ୍‌ପଦ ହେଲୁ ନାହିଁ । ଶିକ୍ଷା ବ୍ୟବସ୍ଥାର ଇଷ୍ଟ ଓ ଇଜ୍ଜତ୍ ଶିକ୍ଷକ-ସମାଜର ସତତା ବା ଇଣ୍ଟେଗ୍ରିଟି ଉପରେ ବିଶେଷ ନିର୍ଭରଶୀଳ ।

## ଶିକ୍ଷକ-ସମାଜର ଭାବମୂର୍ତ୍ତି

'ମଣିଷ-ଗଢ଼ା' ଭଳି ଗୁରୁତ୍ୱପୂର୍ଣ୍ଣ ଓ ଦାୟିତ୍ୱବାନ୍ କାର୍ଯ୍ୟ ଶିକ୍ଷକ-ଶିକ୍ଷିକାମାନେ ଗ୍ରହଣ କରି ଥାଆନ୍ତି । ତେଣୁ ସମାଜର ଆଉ ପାଞ୍ଚଟା ବୃତ୍ତି ବା ଧନ୍ଦାଠାରୁ ସେମାନଙ୍କର ବୃତ୍ତି କେତେକ ପରିମାଣରେ ପୃଥକ୍ ଓ ସ୍ୱତନ୍ତ୍ର ।

ଜଣେ ମାଜିଷ୍ଟ୍ରେଟ୍, ଇଞ୍ଜିନିୟର୍, କିରାଣୀ ବା କଣ୍ଟ୍ରାକ୍ଟରଙ୍କ ବୃତ୍ତି ସହ ଶିକ୍ଷକ-ବୃତ୍ତିକୁ ତୁଳନା କଲେ, ଆମେ ଭୁଲ କରି ବସିବା । ଏହାକୁ ଠିକ୍ ଏକ 'ଚାକିରି' ବୋଲି ଭାବିବା ବା କହିବା ଉଚିତ୍ ନୁହେଁ । ଅନ୍ୟାନ୍ୟ ସରକାରୀ ବା ବେସରକାରୀ ଚାକିରିଠାରୁ ଏହା କିଛି ପରିମାଣରେ ଭିନ୍ନ । ଏବେ ଆମର ପ୍ରାୟ ସମସ୍ତ ଶିକ୍ଷକ-ଶିକ୍ଷିକା ଚିନ୍ତାରେ ତଥା କାର୍ଯ୍ୟରେ ଏହି ଭିନ୍ନତାକୁ ମାନୁ ନ ଥିବାରୁ ବଡ଼ ଅସୁବିଧା ହେଉଛି ।

ପୂର୍ବରୁ ସାଧାରଣତଃ ଶିକ୍ଷକତା ପ୍ରତି ଶ୍ରଦ୍ଧା ଓ ଅନୁରାଗ ଥିବା ବ୍ୟକ୍ତିମାନେ ଏହି ମହତ୍ ବୃତ୍ତି ଗ୍ରହଣ କରୁଥିଲେ । ଅର୍ଥାତ୍ ଲୋକେ ଶିକ୍ଷକ-ଶିକ୍ଷିକା ହେଉଥିଲେ By choice । ଏବେ ଶିକ୍ଷାୟତନର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ * ବହୁ ସଂଖ୍ୟକ ବ୍ୟକ୍ତି ଶିକ୍ଷକତା ପାଇଁ ଲୋଡ଼ା ପଡ଼ିଲେ । ଫଳରେ ଏହି ବୃତ୍ତି ପାଇଁ ରୁଚି, ଶ୍ରଦ୍ଧା ଓ ଆଗ୍ରହ ଥାଉ ନ ଥାଉ, ଖାସ୍ କର୍ମ ନିଯୁକ୍ତି ଘେନି ଲୋକେ ଶିକ୍ଷା-କ୍ଷେତ୍ରରେ ପଶିଗଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଶିକ୍ଷକତା ପ୍ରତି ଅଙ୍ଗୀକାରବଦ୍ଧ ନ ରହିବା ସ୍ୱାଭାବିକ କଥା । ସାଧାରଣତଃ ସେହିଭଳି ଶିକ୍ଷକ ଶିକ୍ଷିକା—ସେ ଲେକଚରର୍, ରିଡର୍ ବା ପ୍ରଫେସର ଯାହା ହୁଅନ୍ତୁ ପଛକେ—ଏହି ମହନୀୟ ବୃତ୍ତିକୁ ସାଧାରଣ ଚାକିରୀ ଭାବରେ ଗ୍ରହଣ କରି କାର୍ଯ୍ୟ କରନ୍ତି । ଦିନକରେ ୪୫ ମିନିଟ୍ ବା ଘଣ୍ଟାଏ ସମୟ ସୀମାର ଦୁଇ ତିନିଟି କ୍ଲାସ; କୌଣସିମତେ ତାହା ସାରି ଦେଇ, ଶିକ୍ଷାନୁଷ୍ଠାନରୁ ଉଭାନ୍ । କଲେଜ ବା ବିଶ୍ୱବିଦ୍ୟାଳୟରେ ସେମାନଙ୍କର ଯେ ଆହୁରି କିଛି କାର୍ଯ୍ୟ ରହିଛି—ଦାୟ ଦାୟିତ୍ୱ ଅଛି, ସେଥିପ୍ରତି ନିଘା ନାହିଁ । ଯେଉଁ ଦିନ ଆଦୌ କୌଣସି କ୍ଲାସ ନ ଥାଏ, ସେଦିନ ଶିକ୍ଷାନୁଷ୍ଠାନକୁ ନ ଗଲେ ବି ଚଳିଯାଏ । କ୍ଲାସ ଥାଉ ବା ନ ଥାଉ, ପ୍ରତ୍ୟେକ ଶିକ୍ଷକ-ଶିକ୍ଷିକା ଦୈନିକ

---

* ସ୍ୱାଧୀନତା-ପ୍ରାପ୍ତି ପୂର୍ବରୁ ସମଗ୍ର ଭାରତରେ ଥିଲା ମାତ୍ର ୨୧ଟି ବିଶ୍ୱବିଦ୍ୟାଳୟ । ଏବେ ବିଶ୍ୱବିଦ୍ୟାଳୟର ସଂଖ୍ୟା ହୋଇଛି ପାଖାପାଖି ୧୫୦ ଏବଂ ବିଭିନ୍ନ ପ୍ରକାର କଲେଜ ସଂଖ୍ୟା ବର୍ତ୍ତମାନ ପ୍ରାୟ ୩୫୦୦ । ଓଡ଼ିଶାରେ ବିଶ୍ୱବିଦ୍ୟାଳୟର ସଂଖ୍ୟା—୪ ଏବଂ ବିଭିନ୍ନ ପ୍ରକାର କଲେଜ ସଂଖ୍ୟା—ପ୍ରାୟ ୪୦୦ ।

ଅନ୍ତତଃ ଗରି ଘଣ୍ଟା ଶିକ୍ଷାନୁଷ୍ଠାନରେ ଉପସ୍ଥିତ ରହିବାର ନିୟମ ଅଛି । ତାହା ମାନୁଛି କିଏ ? କୌଣସି କୌଣସି କଲେଜରେ ଜଣେ ଜଣେ ଶିକ୍ଷକ ଶିକ୍ଷିକାଙ୍କୁ ମାସରେ କେବଳ ମାତ୍ର ଥରେ—ବେତନ ନେବା ଦିନଟିରେ ଦେଖିବା ପାଇଁ ମିଳିଥାଏ ବୋଲି ସହକର୍ମୀମାନଙ୍କଠାରୁ ଶୁଣିଛି ।

ଏଭଳି ଶିକ୍ଷକ-ଶିକ୍ଷିକାଙ୍କ ପକ୍ଷରେ ଅଧ୍ୟୟନ-ଅଧ୍ୟାପନା ନିମିତ୍ତ ମାତ୍ର—ନିହାତି ଏକ ଗୌଣ କାର୍ଯ୍ୟ । ସେହି ଗୌଣ କାର୍ଯ୍ୟଟି କୌଣସି ମତେ ତୁଲାଇ ଦେଇ ସେମାନେ ନିଜ ନିଜର ଅସଲ ଧନ୍ଦାରେ ଲାଗି ଥାଆନ୍ତି । ପଦୋନ୍ନତି, ବେତନ-ବୃଦ୍ଧି, ବିଭିନ୍ନ ଅର୍ଥକରୀ ଏକ୍ସଟ୍ରା-କରିକ୍ୟୁଲର୍ କର୍ମ-ନିଯୁକ୍ତି, ପରୀକ୍ଷକ-ନିରୀକ୍ଷକ ଆଦି କୋ କରିକ୍ୟୁଲର୍ କର୍ମ-ନିଯୁକ୍ତି ପ୍ରଭୃତି ଶିକ୍ଷାନୁଷ୍ଠାନରେ ବହୁ ଧନ୍ଦା । ଏହା ବାହାରେ ବି କିଛି କିଛି ଧନ୍ଦା ରହିଛି । କେହି କେହି ଗାଈ ଗୋରୁ ପୋଷି କ୍ଷୀର-ବେପାର କରନ୍ତି, କେହି କେହି କରନ୍ତି କୁକୁଡ଼ା-ଚାଷ ବା ବାଡ଼ି ବଗିଚା, ଆଉ କେହି କେହି ଛାପାଖାନା ବସାନ୍ତି କିମ୍ବା ହୋମିଓପାଥି ଚିକିତ୍ସା କରନ୍ତି । ଏହି ସବୁ ଧନ୍ଦାକୁ ସଉକୀ କାର୍ଯ୍ୟ ବା Hobby ଭବରେ ଗ୍ରହଣ କରଯାଉଥିଲେ, ଆପତ୍ତି ନ ଥାନ୍ତା ! କିନ୍ତୁ ଏହା ହିଁ ହୋଇଥାଏ ସେମାନଙ୍କର କର୍ତ୍ତବ୍ୟ କାର୍ଯ୍ୟ; ଅଧ୍ୟୟନ-ଅଧ୍ୟାପନା ଗୌଣାତି-ଗୌଣ ।

ଏବେ ଆମର ଅଧିକାଂଶ ଶିକ୍ଷକ-ଶିକ୍ଷିକାଙ୍କ ମଧ୍ୟରେ ଯେଉଁ ପେଷାଦାରି ମନୋବୃତ୍ତି ବା Professionalism ପ୍ରବଳ ହୋଇ ଉଠିଛି, ତାହା ଉଚ୍ଚ ଶିକ୍ଷା ବ୍ୟବସ୍ଥା ପକ୍ଷରେ ଲାଭଜନକ ନ ହୋଇ କ୍ଷତିକାରକ ହେଉଥିବାର ଦେଖାଯାଉଛି । ତଦୁପରି ସେମାନଙ୍କର ରହିଛି—ବୈଷୟିକ ଉନ୍ନତି ପାଇଁ (ବୈଷୟିକ ସଙ୍ଗତି ପାଇଁ ନୁହେଁ) ଉଦଗ୍ର ଲାଳସା । ଫଳରେ, ସାଂପ୍ରତିକ ସମାଜରେ ଶିକ୍ଷକମାନଙ୍କର ଆଦର୍ଶଭବମୂର୍ତ୍ତି ଅନେକ ପରିମାଣରେ କ୍ଷୁଣ୍ଣ ହୋଇ ଯାଇଛି । ଆମର ଏହି ଐତିହ୍ୟ-ଶାସିତ ଦେଶରେ ଏକଦା ଶିକ୍ଷକଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହିତ ତୁଳନା କରଯାଉଥିଲା ଏବଂ ତାଙ୍କୁ 'ସାକ୍ଷାତ ପରଂବ୍ରହ୍ମ' ବୋଲା ଯାଉଥିଲା । ଏବେ ଶିକ୍ଷକମାନଙ୍କୁ ସେହି ଦୃଷ୍ଟିରେ ଦେଖିବା ପାଇଁ ଅନେକେ କୁଣ୍ଠା ପ୍ରକାଶ କରୁଥିବାର ଜଣାଯାଉଛି ।

ନିର୍ଦ୍ଦିଷ୍ଟ ପିରିୟଡ୍ ଅନୁସାରେ ଯାଇ କ୍ଲାସ୍ କରିବା ଗୋଟିଏ କଥା । କ୍ଲାସ୍‌କୁ ଯାଇ ଶିକ୍ଷକ କଣ କିପରି ପଢ଼ାଉଛନ୍ତି, ତାହା ଆଉ ଗୋଟିଏ କଥା । ଅଧ୍ୟାପକ-ଅଧ୍ୟାପିକାମାନେ କ୍ଲାସରେ ନିଜ ନିଜ ବିଷୟ ବସ୍ତୁ ଉପରେ ସାପ କି ବେଙ୍ଗ କଣ କହୁଛନ୍ତି—ଭୁଲ୍ କି ଠିକ୍ କଣ ପଢ଼ାଉଛନ୍ତି, ତାହା ଜାଣିବାର ବାଟ ନାହିଁ । କ୍ଲାସ୍‌ରେ ଥିବା ଛାତ୍ରଛାତ୍ରୀମାନେ ନ ଜାଣିପାରିବା ହିଁ ସ୍ୱାଭାବିକ । ମୋର ଦୀର୍ଘ ଦିନର ଅଭିଜ୍ଞତାରୁ ଜାଣେ—କେତେକ ଶିକ୍ଷକ-ଶିକ୍ଷକା କ୍ଲାସରେ ଭୁଲ୍ କଥା କହନ୍ତି, ତଥ୍ୟ ତତ୍ତ୍ୱାଦି ଠିକ୍ ଭାବରେ ବିଶ୍ଳେଷଣ କରି ପାରନ୍ତି ନାହିଁ, ପଢ଼ାଉଥିବା ବିଷୟ ବସ୍ତୁର ସର୍ବଶେଷ ପ୍ରସାରିତ ତଥ୍ୟ ବା ଜ୍ଞାନ ଛାତ୍ରଛାତ୍ରୀମାନଙ୍କୁ ଦେଇ ପାରନ୍ତି ନାହିଁ । ତାହାର କାରଣ, ସେମାନେ ନିଜେ କିଛି ପଢ଼ନ୍ତି ନାହିଁ—ସେହି ଏମ୍. ଏ. କିମ୍ବା ଏମ୍.ଏସ୍. ସି. କ୍ଲାସରେ ପୂର୍ବରୁ ପଢ଼ିଥିବା ପାଠକୁ ଘଷି ମାଜି କାର୍ଯ୍ୟ ତୁଲାଇ ଦିଅନ୍ତି । ପ୍ରାଣୀ ବିଜ୍ଞାନର ଅଧ୍ୟାପକ ବନ୍ଧୁ ବି: ଏସ୍.ସି: ବା ଏମ୍: ଏସ୍‌ସି: କ୍ଲାସ୍‌ରେ ପ୍ରଜାତିର ଉତ୍ପତ୍ତି ବା Origin of Species ତତ୍ତ୍ୱ ପଢ଼ାଉଛନ୍ତି । ପ୍ରାୟ ଶହେ ବର୍ଷ ତଳେ ଡ଼ାରୱିନ୍ ସାହେବ ଏ ବିଷୟରେ ଯାହା ଯେତିକି କହିଥିଲେ, ସେତିକି ମାତ୍ର ତାଙ୍କର ପୁଞ୍ଜି । ଇତି ମଧ୍ୟରେ ଯେ ତତ୍ତ୍ୱଟି ଉପରେ କିଛି ଖଣ୍ଡନ-ମଣ୍ଡନ ହୋଇଗଲଣି, ତାହା ସେ ଜାଣିବା ପାଇଁ ଚେଷ୍ଟା କରି ନାହାନ୍ତି । ଫଳରେ ବିଷୟ ବସ୍ତୁଟି ଉପରେ ପ୍ରସାରିତ ସର୍ବଶେଷ ଜ୍ଞାନ ବା ଧ୍ୟାନ-ଧାରଣା ଛାତ୍ରଛାତ୍ରୀଙ୍କୁ ସେ ପରିବେଷଣ କରିବେ କିପରି ? ସେହିପରି ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ବନ୍ଧୁ ବି: ଏ: କିମ୍ବା ଏମ୍: ଏ: ଶ୍ରେଣୀରେ ସାହିତ୍ୟର ଇତିହାସ ପଢ଼ାଇଲାବେଳେ କହୁଛନ୍ତି ଯେ—ମାଦଳା ପାଞ୍ଜୀର ରଚନା-କାଳ (ଲିପି-କାଳ ନୁହେଁ) ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ । ଏହି ତଥ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ, ପଣ୍ଡିତ ସୂର୍ଯ୍ୟନାରାୟଣ ପ୍ରମୁଖଙ୍କ ଆଲୋଚନାରୁ କେତେ ବର୍ଷ ତଳେ ସେ ପାଇଥିଲେ । ଇତି ମଧ୍ୟରେ ତଥ୍ୟଟି ଯେ ଭ୍ରାନ୍ତ ପ୍ରତିପାଦିତ ହୋଇ ଯାଇଛି, ସେହି ଖବର ତାଙ୍କ ପାଖରେ ନାହିଁ । ତେଣୁ ମାଦଳା ପାଞ୍ଜୀ ସମ୍ପର୍କରେ ପ୍ରସାରିତ ସର୍ବଶେଷ ଜ୍ଞାନ ବା ଧାରଣା ଛାତ୍ରଛାତ୍ରୀମାନଙ୍କୁ ସେ ଦେଇ ପାରିବେ କିପରି ? ଅଧ୍ୟାପକ ଯେ ଆଗେ ଜଣେ 'ବଡ଼ ଛାତ୍ର' ହେବା ଦରକାର, ଏ କଥା ଏବେ ବହୁ ବନ୍ଧୁ ପାସୋରି ପକାଇଥିବାର ମନେ ହେଉଛି ।

ଶିକ୍ଷକ-ଶିକ୍ଷିକାମାନଙ୍କ କାର୍ଯ୍ୟ ସଂସାଧନର ମୂଲ୍ୟାୟନ ବିଷୟରେ ପ୍ରଶ୍ନ ଉଠିଛି । ଅର୍ଥାତ୍ ସେମାନଙ୍କ ଅଧ୍ୟୟନ-ଅଧ୍ୟାପନାର ଦୋଷ-ଗୁଣ ବିଚାର ଲୋଡ଼ା ପଡ଼ିଛି । ଏହା ଏକ ସହଜ ବ୍ୟାପାର ନ ହେଲେ ହେଁ, ଏହାର ବିଶେଷ ଆବଶ୍ୟକତା ଥିବାର ଉପଲବ୍ଧି କରା ହେଉଛି । କେତେ ବର୍ଷ ତଳେ ଏ ସଂପର୍କରେ ମେହରୋତ୍ରା କମିଟି ରିପୋର୍ଟ୍ (୧୯୮୭) ଆମ ଆଗରେ ଉପସ୍ଥାପିତ ହୋଇଛି ଏବଂ ୧୯୮୯ ମସୀହା ଅଗଷ୍ଟ ମାସରେ ଆମର ଶିକ୍ଷକ ମହାସଙ୍ଘ ପକ୍ଷରୁ ପୁରୀଠାରେ ଅନୁଷ୍ଠିତ ଏକ ସଭାରେ ଏ ବିଷୟରେ ବିଚାର-ବିମର୍ଶ କରାଯାଇଛି । ଆପଣା କାର୍ଯ୍ୟ ସଂସାଧନର ମୂଲ୍ୟାୟନକୁ ଅଧିକାଂଶ ଶିକ୍ଷକ-ଶିକ୍ଷିକା ସୁନଜରରେ ଦେଖୁ ନ ଥିବାର ମୁଁ ଜାଣେ । ସମସ୍ୟା ହେଉଛି—ଏହି ମୂଲ୍ୟାୟନ କାର୍ଯ୍ୟଟି କରିବ କିଏ ? ବିଦେଶରେ ବିଭିନ୍ନ ଦେଶରେ ପ୍ରଚଳିତ ଥିବା ରୀତି ଅନୁଯାୟୀ ଆମର ଛାତ୍ର-ଛାତ୍ରୀମାନେ ସେପରି ମୂଲ୍ୟାୟନ କରିପାରନ୍ତି । ଅଧ୍ୟକ୍ଷ ବା ବରିଷ୍ଠ ଅଭିଜ୍ଞ ଅଧ୍ୟାପକମାନେ ମଧ୍ୟ ତାହା କରି ପାରନ୍ତି ; କଲେଜ ଓ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ସେମାନଙ୍କୁ ସେହି ଉଦ୍ଦେଶ୍ୟରେ ନିଯୁକ୍ତ କରାଯାଇ ପାରେ । କିନ୍ତୁ ଏପରି ମୂଲ୍ୟାୟନର ସବୁଠାରୁ ଭଲ ପନ୍ଥା ହେଉଛି— ଶିକ୍ଷକ-ଶିକ୍ଷିକାମାନଙ୍କର ଆତ୍ମ ସମୀକ୍ଷା । ସଚେତନ ସ୍ୱାଭିମାନୀ ଶିକ୍ଷକ-ସମାଜ ନିଜେ ନିଜର ଅଧ୍ୟାପନାଦି କାର୍ଯ୍ୟର ଦୋଷ-ଗୁଣ ବିଚାର କରି ସତର୍କତା ଅବଲମ୍ବନ ପୂର୍ବକ ଭବିଷ୍ୟତରେ ଆତ୍ମୋନ୍ନତି ପାଇଁ ଯତ୍ନବାନ୍ ହେବା ଉଚିତ ।

ଅଧ୍ୟାପକ ଅଧ୍ୟାପିକାମାନେ ଛାତ୍ର ଛାତ୍ରୀମାନଙ୍କୁ କେବଳ 'ଶିକ୍ଷା' ଦେଲେ, ଯଥେଷ୍ଟ ହେବ ନାହିଁ; ଶିକ୍ଷା ସଙ୍ଗେ ସଙ୍ଗେ 'ଦୀକ୍ଷା' ଦେବାକୁ ପଡ଼ିବ । ଅର୍ଥାତ୍ ଶିକ୍ଷକସମାଜ ନିଜର ସୁରୁଚି, ମତାଦର୍ଶ ଓ ଉନ୍ନତ କାର୍ଯ୍ୟ-ପ୍ରଣାଳୀରେ ଛାତ୍ର-ଛାତ୍ରୀମାନଙ୍କୁ ଯଥାସମ୍ଭବ ଅନୁପ୍ରାଣିତ କରିବେ—ଆପଣାର ଆଦର୍ଶ ଭାବମୂର୍ତ୍ତିରେ ଉଦ୍‌ବୁଦ୍ଧ କରିବେ । ସେଥିପାଇଁ ଶିକ୍ଷକ-ଶିକ୍ଷିକାମାନଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଜାହିର୍ କରିବା ଆବଶ୍ୟକ । ସାଂପ୍ରତିକ ସମାଜରେ ତାହା କରିବା କଷ୍ଟକର ହେଲେ ହେଁ, ଅସାଧ୍ୟ ନୁହେଁ । ବର୍ତ୍ତମାନ ମଧ୍ୟ ଆମ ଭିତରେ ସେହିପରି ବଳିଷ୍ଠ ବ୍ୟକ୍ତିତ୍ୱ-ସଂପନ୍ନ କେତେକ ଶିକ୍ଷକ ଅଛନ୍ତି, ଯେଉଁମାନେ ଛାତ୍ରଛାତ୍ରୀଙ୍କ ସମେତ ଜନ-ସମାଜର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ଓ ଭକ୍ତି ଲାଭ କରି ଥାଆନ୍ତି । ସେହିମାନେ ହିଁ ପ୍ରକୃତରେ ଆମର ଶାସ୍ତ୍ରୋକ୍ତ 'ଗୁରୁ' ବା 'ଆଚାର୍ଯ୍ୟ' ।

## ଛାତ୍ର-ଅଶାନ୍ତି

ଆଜିକାଲି ଛାତ୍ର-ଅଶାନ୍ତି ବା ଛାତ୍ର ଆନ୍ଦୋଳନ କଲେଜ ଓ ବିଶ୍ୱ-ବିଦ୍ୟାଳୟମାନଙ୍କରେ ଏକ ସାଧାରଣ ମାମୁଲି ଘଟଣା ହୋଇଗଲା ଭଳି ଲାଗୁଛି । ବର୍ଷକରେ ଥରେ ବା ଏକାଧିକ ଥର ଆନ୍ଦୋଳନ ନ ହେଲେ, ଯୁବଶକ୍ତିର ଉତ୍ତାପ ଯେପରି ପ୍ରଶମିତ ହୋଇପାରୁ ନାହିଁ ! ତେଣୁ ଥରକୁ ଥର ଚାଲିଛି—ଘେରାଉ, ଧାରଣା, ଅନଶନ, ବିକ୍ଷୋଭ-ପଟୁଆର୍, ପ୍ରତିବାଦ-ସଭା ପ୍ରଭୃତି ଛାତ୍ରସମାଜର ସଂଗଠିତ କାର୍ଯ୍ୟକ୍ରମ । ବେଳେବେଳେ ସେହି କାର୍ଯ୍ୟକ୍ରମ ଭଙ୍ଗାରୁଜା, ପୋଡ଼ା-ଜଳା, ପିଟାବାଡ଼ା, ଛୁରା-ମରାମରି ଭଳି ଭୟାବହ ହିଂସାତ୍ମକ ରୂପ ଧାରଣ କରୁଛି । କିଛି ଧନ, ଜୀବନ ହାନି ହେଉଛି । ଏହାଦ୍ୱାରା ଅଧିକାଂଶ ଛାତ୍ରଛାତ୍ରୀ କ୍ଷତିଗ୍ରସ୍ତ ହେଉଛନ୍ତି । ଲାଭ ହେଉଛି ଅବଶ୍ୟ ଅଳ୍ପ କେତେ ଜଣ ଛାତ୍ରଙ୍କର; ସେହି ଆନ୍ଦୋଳନରୁ ଛାତ୍ରନେତାମାନେ ବାହାରୁଛନ୍ତି-- ସେମାନେ ପୁଣି ବିଭିନ୍ନ ରାଜନୈତିକ ଦଳ ଓ ନେତାଙ୍କର ଆଶ୍ରୟ ତଥା ଆଶୀର୍ବାଦ ପାଇ ପରବର୍ତ୍ତୀ କାଳରେ ରାଷ୍ଟ୍ରରେ ଜନସେବାର ପତାକା ଉଡ଼ାଉଛନ୍ତି ।

ଏହି ଛାତ୍ର-ଅଶାନ୍ତିର ଅସଲ କାରଣ କଣ ଜାଣନ୍ତି କି ? ଗତ କୋଡ଼ିଏ ପଚିଶ ବର୍ଷ ମଧ୍ୟରେ ସଂଘଟିତ ଛାତ୍ର-ଅଶାନ୍ତିରୁ ଆପଣମାନେ ଲକ୍ଷ୍ୟ କରିଥିବେ —ଏହି ସବୁ ଅଶାନ୍ତି ଆନ୍ଦୋଳନ ମୂଳରେ କୌଣସି ଗୁରୁତ୍ୱପୂର୍ଣ୍ଣ ଆଭିମୁଖ୍ୟ ପ୍ରାୟ ନାହିଁ । କ୍ୱଚିତ୍ କୌଣସି ବୃହତ୍ତର ସ୍ୱାର୍ଥ ଅଥବା କୌଣସି ମହତ୍ତର ଲକ୍ଷ୍ୟ ବା ଉଦ୍ଦେଶ୍ୟ ଘେନି ଏହା ସଂଗଠିତ ହେଉଥିବାର ଦେଖାଯାଏ । କୌଣସି ଦୋକାନୀ ଜଣେ ଛାତ୍ରକୁ ବାକି ପଡ଼ିଥିବା ପ୍ରାପ୍ୟ ପଇସା ମାଗିଲା, କିମ୍ବା କୌଣସି ବାସ୍ କଣ୍ଡକ୍ଟର ଜଣେ ଛାତ୍ରକୁ କନ୍‌ସେସନ୍ ଟିକେଟ୍ ଦେବାକୁ ମନା କଲା, ବାସ୍, ଆରମ୍ଭ ହୋଇଗଲା ଗୋଳମାଳ ! ଜଣେ ଛାତ୍ର-ବ୍ୟକ୍ତି ସ୍ତରର ସାମାନ୍ୟ ସମସ୍ୟାଟିଏ ହୋଇଗଲା ସମୁଦାୟ ଛାତ୍ର-ସମାଜ ସ୍ତରର ସମସ୍ୟା । ତା'ପରେ ଚାଲିଲା ବିକ୍ଷୋଭ ଓ ଆନ୍ଦୋଳନ । ପୃଥିବୀର ଅନ୍ୟାନ୍ୟ ଦେଶରେ ସାଧାରଣତଃ ଯେପରି ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ କୌଣସି ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟରେ ଛାତ୍ର-ଆନ୍ଦୋଳନ ହୋଇଥାଏ; ଏବେ ଆମ ଏଠାରେ ସେପରି ହୋଇଥାଏ ଖୁବ୍ କମ୍ ।

ବିଭିନ୍ନ ଛାତ୍ର-ଆନ୍ଦୋଳନ ପଛରେ କୌଣସି-ନା-କୌଣସି ରାଜନୈତିକ ନେତାଙ୍କର ସାହାଯ୍ୟ ଓ ସମର୍ଥନ ଥିବା ଏକ ଜଣାଶୁଣା କଥା । ଆଉ ଏକ

ଜଣାଶୁଣା ହୋଇ ନ ଥିବା କଥାଟି ହେଲା— କେତେକ ଶିକ୍ଷକ ଶିକ୍ଷିକା ମଧ୍ୟ ବିଭିନ୍ନ ଉଦ୍ଦେଶ୍ୟରେ ଛାତ୍ରସମାଜକୁ ଏ କ୍ଷେତ୍ରରେ ପରୋକ୍ଷ ସାହାଯ୍ୟ ସହଯୋଗ କରିଥାଆନ୍ତି । ଗତବର୍ଷ ଏକ ବଡ଼ କଲେଜର କେତେକ ଅଧ୍ୟାପକ ଗୋଟିଏ ଛାତ୍ର-ଅଶାନ୍ତିକୁ ଜୀଆଇ ରଖିବା ପାଇଁ ଛାତ୍ରନେତାମାନଙ୍କୁ ରୀତିମତ ଚାନ୍ଦା ଦେଇଥିବାର ମୁଁ ଜାଣେ । ଅଧ୍ୟାପକ ହୁଅନ୍ତୁ ବା ରାଜନୈତିକ ନେତା ହୁଅନ୍ତୁ, ପ୍ରଶ୍ନ ହେଉଛି, ଅନ୍ୟ ଜଣଙ୍କ କଥାରେ ପଡ଼ି କିମ୍ବା ଅନ୍ୟ ଜଣକ ମତାଣରେ ମାତି ଛାତ୍ରମାନେ ଆନ୍ଦୋଳନାତ୍ମକ ପନ୍ଥାରେ ଯିବେ କାହିଁକି ? ସେମାନେ ସାବାଳକ ହେଲେଣି —ସ୍ନାତକ, ସ୍ନାତକୋତ୍ତର ଶ୍ରେଣୀରେ ଆସି ପଢ଼ିଲେଣି, ସେମାନଙ୍କର କଣ ନିଜସ୍ୱ ବିଗ୍ଭର-ବୁଦ୍ଧି ନାହିଁ ? ସ୍ୱାଭିମାନ ନାହିଁ ? ସେମାନେ ନିଜ-ନିଜ ମଧ୍ୟରେ ବିଗ୍ଭର-ବିମର୍ଶ କରି କେଉଁ ଆନ୍ଦୋଳନ କିପରି ଭବେ କରିବା କଥା, ତାହା ସ୍ଥିର କରି ପାରନ୍ତେ !

ଛାତ୍ର ଆନ୍ଦୋଳନ ସମୟରେ ବାସ୍ ପୋଡ଼ି ଦିଆଗଲା, କଲେଜ ଲାଇବ୍ରେରିରୁ ବହିପତ୍ର ଲୁଟି ନିଆହେଲା, ପୋଷ୍ଟ ଅଫିସ୍‌ରେ ଲୁଟ୍‌ତରାଜ ହେଲା, କଲେଜ୍ ଅଫିସ୍ ନଷ୍ଟଭ୍ରଷ୍ଟ କରଗଲା, ଇତ୍ୟାଦି ବିଭିନ୍ନ ଦୁର୍ଘଟଣାର ସଫେଇ ଦେଇ ଛାତ୍ରନେତାମାନେ କହିବାର ଶୁଣାଯାଏ—ଛାତ୍ରସମାଜ ସେହି ହିଂସାତ୍ମକ କାଣ୍ଡକାରଖାନା ପାଇଁ ଆଦୌ ଦାୟୀ ନୁହେଁ । ବାହାରର ଅସାମାଜିକ ଲୋକେ ତାହା କରିଛନ୍ତି । ମୋର କହିବାର କଥା ହେଉଛି— ତଥାକଥିତ ଏହି ଅସାମାଜିକ ଲୋକେ କିଏ ? ସେମାନେ କଣ ଗଛରେ ଫଳନ୍ତି ? ଛାତ୍ରଛାତ୍ରୀ, ଶିକ୍ଷକ ଶିକ୍ଷିକାଙ୍କ ମଧ୍ୟରେ କଣ ଅସାମାଜିକ ଲୋକ ନାହାନ୍ତି ? ଛାତ୍ରନେତାମାନେ ଏହି ହିଂସାତ୍ମକ କାଣ୍ଡକୁ ଅସାମାଜିକ ଲୋକଙ୍କ କାର୍ଯ୍ୟ ବୋଲି ଯଦି ନିନ୍ଦନୀୟ ବ୍ୟାପାର ବୋଲି ମନେ କରୁଛନ୍ତି, ତାହା ହେଲେ ସେହି ଅସାମାଜିକ ବ୍ୟକ୍ତିଙ୍କୁ ସଂଗଠିତ ହୋଇ ବାଧା ଦେଉ ନାହାନ୍ତି କାହିଁକି ? ଅସାମାଜିକ ଲୋକଙ୍କର ଘୃଣ୍ୟ କାର୍ଯ୍ୟକୁ ମିଳିତ ଭବରେ ପ୍ରତିରୋଧ କରୁ ନାହାନ୍ତି କାହିଁକି ? ତାହା ହେଉଥିଲେ ଛାତ୍ର-ଆନ୍ଦୋଳନ ସମୟରେ ବାରମ୍ବାର ରଷ୍ଟ୍ରୀୟ ସମ୍ପତ୍ତି ଏପରି ନଷ୍ଟଭ୍ରଷ୍ଟ ହେଉ ନ ଥାନ୍ତା —ଏପରି କି, କେତେକ ମୂଲ୍ୟବାନ୍ ଜୀବନ ବିପନ୍ନ ହେଉ ନ ଥାନ୍ତା !

ଜଣ-ଛାତ୍ର, ମୁଁ ଭଲ ଭବରେ ଜାଣେ—ବଡ଼ ସମ୍ବେଦନଶୀଳ ଓ ବିଗ୍ଭରବୁଦ୍ଧିସମ୍ପନ୍ନ । ତାଙ୍କ ମଧ୍ୟରେ ନାସ୍ତିବାଚକ ଧ୍ୱଂସାତ୍ମକ ପ୍ରବଣତା ପ୍ରାୟ କାର୍ଯ୍ୟ କରୁ ନ ଥାଏ । ସେହି ଜଣ-ଛାତ୍ର ଯେତେବେଳେ ଗଣ-ଛାତ୍ର ହୋଇ-

ଯାଆନ୍ତି, ସେତେବେଳେ ତାଙ୍କଠାରେ ବିପରୀତ ବ୍ୟବହାର ବା ଆଚରଣ ଲକ୍ଷ୍ୟ କରଯାଏ—ବହୁ କ୍ଷେତ୍ରରେ ଗଣ-ଛାତ୍ର ପ୍ରବଳ ଦଳ-ମନୋବୃତ୍ତି (Mob Spirit ବା Gang Spirit) ଘେନି କାର୍ଯ୍ୟ କରିଥାଆନ୍ତି । ନିଜ କାର୍ଯ୍ୟାବଳୀର ଭଲ-ମନ୍ଦ ଦିଗ ବିଗ୍ଭର କରି ପାରନ୍ତି ନାହିଁ । ନିଶାସକ୍ତ ବାଗ୍ଭଳ ବ୍ୟକ୍ତି ଭଳି କାହାକୁ କଣ କହନ୍ତି, ଜାଣି ପାରନ୍ତି ନାହିଁ । ଅରଣ୍ୟ ମଇଁଷି ଭଳି ଯୁଆଡ଼େ ଇଚ୍ଛା ସେଆଡ଼େ ମାଡ଼ି ଯାଆନ୍ତି । ଗଣ-ଛାତ୍ର ମଧ୍ୟରେ ଜଣ-ଛାତ୍ରର ଚେତନା ଓ ବିଗ୍ଭର-ବୁଦ୍ଧି ପ୍ରକଟିତ ହେଲେ, ଛାତ୍ର-ଅଶାନ୍ତି ମଧ୍ୟରୁ ଆମର ସମାଜ ଓ ରାଷ୍ଟ୍ର କିଛି ସୁଫଳ ପାଇ ପାରନ୍ତା !

ଛାତ୍ର-ସମାଜ ଅଶାନ୍ତ ହୁଅନ୍ତୁ—ଭଲ ଭାବରେ ଆନ୍ଦୋଳନ କରନ୍ତୁ—ନିର୍ଭୀକ ଭାବରେ ବିପ୍ଳବରେ ଯୋଗ ଦିଅନ୍ତୁ ! ମୋର ତହିଁରେ ଆପତ୍ତି ନାହିଁ । କାରଣ, ସାଂପ୍ରତିକ ସମାଜ ଓ ରାଷ୍ଟ୍ର ଏପରି ପରିସ୍ଥିତିରେ ଗତି କରୁଛି ଯେ, ଆନ୍ଦୋଳନ ବା ବିପ୍ଳବ ବାରମ୍ବାର ଲୋଡ଼ା ପଡ଼ୁଛି । ସେଥିପାଇଁ ଛାତ୍ରସମାଜ ଆନ୍ଦୋଳନ କରିବ ନାହିଁ ତ, ଆଉ କରିବ କିଏ ? ଶିଶୁ ବା ବୃଦ୍ଧମାନେ ତ ଆନ୍ଦୋଳନ କରିପାରିବେ ନାହିଁ ! ଗ୍ଭକିରିଆ ବା ଗ୍ଭଟୁକାରମାନେ ତ କରିପାରିବେ ନାହିଁ ! କିନ୍ତୁ ବୃହତ୍ତର ଲକ୍ଷ୍ୟ ବା ଉଦ୍ଦେଶ୍ୟ ଘେନି, ମହତ୍ତର 'ଇସୁ' ବା 'କଜ୍' ପାଇଁ ଛାତ୍ରସମାଜ ଆନ୍ଦୋଳନ କରନ୍ତୁ ! ଛାତ୍ର-ଅଶାନ୍ତି ଦେଶରେ ଅଯଥା ଭ୍ରାନ୍ତି ସୃଷ୍ଟି ନ କରୁ ! ରାଷ୍ଟ୍ର ଓ ସମାଜରେ ତାହା ସନ୍ନଦ୍ଧ ସଂକ୍ରାନ୍ତି ଆଣୁ ! ତାହା ଦ୍ୱାରା ଛାତ୍ରସମାଜର କୌଣସି କ୍ଷତି ହେବ ନାହିଁ । ଗତ ସ୍ୱାଧୀନତା-ଆନ୍ଦୋଳନ କାଳରେ ଶିକ୍ଷାୟତନରୁ ବାହାରି ଆସି ଆନ୍ଦୋଳନରେ ଯୋଗଦେବା ପାଇଁ ଛାତ୍ର-ସମାଜକୁ ମହାତ୍ମା ଗାନ୍ଧୀ ଡାକରା ଦେଇଥିଲେ । ଭାରତ ତଥା ଅନ୍ୟାନ୍ୟ ଦେଶର ସ୍ୱାଧୀନତା-ସଂଗ୍ରାମରେ ଛାତ୍ରଛାତ୍ରୀଙ୍କର ବିଶେଷ ଭୂମିକା କାହାରିକୁ ଅଜଣା ନାହିଁ । ଚୀନ୍, ଜାପାନ, ଜର୍ମାନ୍ ଆଦି ଦେଶରେ ଛାତ୍ର-ଅଶାନ୍ତିର ହିସାବ-ଫର୍ଦ୍ଦ ବା ବ୍ୟାଲନ୍ସ-ସିଟ୍ ମଧ୍ୟ ଆମର ଛାତ୍ରସମାଜ ପରୀକ୍ଷା କରି ଦେଖି ପାରନ୍ତି ।

ଛାତ୍ର-ଅଶାନ୍ତିକୁ ଏବେ ଆମର ସାମାଜିକ ଅଶାନ୍ତି ଓ ଅସନ୍ତୋଷର ଏକ ଅଙ୍ଗ ରୂପେ ଗ୍ରହଣ କରିବାକୁ ହେବ । ଏହା ଆଦୌ ସମାଜ-ନିରପେକ୍ଷ ବା ରାଷ୍ଟ୍ର-ନିରପେକ୍ଷ ବ୍ୟାପାର ନୁହେଁ । ଏହାର ସ୍ୱରୂପ-ପ୍ରକୃତି ହୃଦୟଙ୍ଗମ କରି ସମାଜସେବୀ ନେତା ଓ ରାଷ୍ଟ୍ରନାୟକମାନେ ଭୀତତ୍ରସ୍ତ ବା ଆତଙ୍କିତ ହେଲେ

ଚଳିବ ନାହିଁ—ଏହାକୁ ଦମନ କରିବା ମଧ୍ୟ ରାଷ୍ଟ୍ର ପକ୍ଷରେ ମଙ୍ଗଳକର ହେବ ନାହିଁ ; ବରଂ ନିଜ ନିଜର ନ୍ୟସ୍ତ ସ୍ୱାର୍ଥର ଊର୍ଦ୍ଧ୍ୱକୁ ଉଠି ସେମାନେ ଏହାକୁ ସମାଜ-ଉନ୍ନୟନ ବା ଦେଶ-ଗଠନ ଉଦ୍ଦେଶ୍ୟରେ ଲଗାଇଦେବା ଉଚିତ ହେବ ।

ବନ୍ଧୁଗଣ, ନିଜ ଘରର ଗୁମର କଥାମାନ ପଦାରେ ପକାଉ ଥିବାରୁ ଆପଣମାନେ ମୋ ଉପରେ ବିରକ୍ତ ହୋଇ ପାରନ୍ତି—ଶିକ୍ଷା-ବ୍ୟବସ୍ଥା ସହ ସଂପୃକ୍ତ ବିଭିନ୍ନ ବ୍ୟକ୍ତିଙ୍କର ପ୍ରେୟ ଉନ୍ମୁକ୍ତ କରୁଛି ବୋଲି ସେମାନେ ରାଗରେ ଖପ୍ପା ହୋଇ ପାରନ୍ତି । ସେଥିପାଇଁ ସମସ୍ତଙ୍କଠାରୁ ମୁଁ ମାଫି ମାଗିନେଉଛି । ଆତ୍ମସମୀକ୍ଷା ପାଇଁ—ନିଜର ସାଂପ୍ରତିକ ସ୍ଥିତି-କଳନା ତଥା ଭବିଷ୍ୟତ୍‌ରେ ଉଚିତ ମାର୍ଗ-ଅବଲମ୍ବନ ପାଇଁ ଏହି ଗୁମର ଫେଡିବା କାର୍ଯ୍ୟଟି ଏବେ ମୋ ମତରେ ଜରୁରୀ ହୋଇ ପଡ଼ିଛି । ଏଠାରେ ଉଚ୍ଚ ଶିକ୍ଷାର ମୁଖ୍ୟତଃ ଏକ ଅନୁଜ୍ଜ୍ୱଳ ଚିତ୍ର ଆପଣମାନଙ୍କ ସମକ୍ଷରେ ଉପସ୍ଥାପିତ କରିଥିଲେ ହେଁ ଏହାର ପରିଶୋଧନ, ଉନ୍ନତି ବା ସମୃଦ୍ଧି ସଂପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ମୁଁ ମନରେ ଉଜ୍ଜ୍ୱଳ ଆଶା ପୋଷଣ କରିଛି ଯେ—ଏହି ଉନ୍ନତି ବା ସମୃଦ୍ଧି ସାଧ୍ୟ ଓ ସମ୍ଭବ । ଆପଣମାନଙ୍କର ଏହି ମହତୀ ସଭାର ଅନୁଷ୍ଠାନ ମୋର ସେହି ଆଶା-ଭରସାର ହିଁ ଏକ ପରମ ପ୍ରତିଭୂ । ଉଚ୍ଚ ଶିକ୍ଷାର ଆହୁରି କେତେକ ଦିଗ, ଯଥା—ଶିକ୍ଷାର ଭାଷା-ମାଧ୍ୟମ, ନାରୀଶିକ୍ଷା, ଅଭିଭାବକ-ସଂପୃକ୍ତି, ସରକାରଙ୍କ ଭୂମିକା ଆଦି ବିଭିନ୍ନ ବିଭବ ସଂପର୍କରେ ଉଚ୍ଚବାଚ କରିବାର ଆବଶ୍ୟକତା ରହିଛି । ମାତ୍ର ସମୟାଭାବ ହେତୁ ଏବଂ ଅନ୍ୟତ୍ର ମୁଁ ଏହିସବୁ ବିଷୟରେ ଆଲୋଚନା କରିଥିବାରୁ, ଆଜି ଏଠାରେ ସେହି କାର୍ଯ୍ୟରୁ ବିରତ ରହୁଛି । ଏତିକିରେ ଆପଣମାନଙ୍କଠାରୁ ମେଲାଣି ନେଉଛି । ପୁନର୍ଦର୍ଶନାୟ ଚ ! □□□

## ପରିଶିଷ୍ଟ

## ଏବର ଶିକ୍ଷା କ ଶୋଷଣର ପ୍ରତୀକ ?

କେଇ ବର୍ଷ ତଳେ ଏକ ଶିକ୍ଷକ-ସମାବେଶରେ ଯୋଗ ଦେବା ଲାଗି ବିଶୋଇ ଯାଇଥିଲି । ନେସନାଲ୍ ହାଇୱେ ଉପରେ ମୟୂରଭଞ୍ଜ ଜିଲ୍ଲାର ବିଶୋଇ ଏକ ପେଣ୍ଠ ଜାଗା । କେଉଁଝର-କରଞ୍ଜିଆ-ଯଶୀପୁର-କଲିକତା ଏବଂ ଟାଟା-ରାଇରଙ୍ଗପୁର-ବାରିପଦା-ଭଦ୍ରକ ଆଦି ସ୍ଥାନକୁ ଯାତାୟାତ ପାଇଁ ଏହା ଏକ

ପ୍ରସିଦ୍ଧ ବନ୍ଦ-ବନ୍ଦର ମଧ୍ୟ । ସ୍ଥାନଟିର ଗୁରୁତ୍ୱ ଦୃଷ୍ଟିରୁ ସେଠାରେ ବିଦ୍ୟୁତ୍ ସରବରାହ କରାଯିବାର କଥା । କିନ୍ତୁ ତାହା ଯେତେବେଳେ କରାଯାଇ ନ ଥିବାରୁ ପ୍ରାଇମେରୀ, ମାଇନର୍ ଓ ଆଶ୍ରମ ସ୍କୁଲର ଶିକ୍ଷକ ବନ୍ଧୁମାନଙ୍କ ମେଳରେ ବିଷୟଟି ଆଲୋଚନା କରିଥିଲି । ଆଲୋଚନାରେ ଶିକ୍ଷକ ବନ୍ଧୁମାନେ ଯେଉଁ ମତ ପ୍ରକାଶ କଲେ, ତାହା ଶୁଣି ମୁଁ ଏକାବେଳକେ ତଟସ୍ଥ ।

ସ୍ଥାନୀୟ ଜନସାଧାରଣ ବିଜୁଳିବତୀ, ରାସ୍ତାଘାଟ, ସ୍କୁଲ, ଥାନା, ଡାକ୍ତରଖାନା ଇତ୍ୟାଦି ସୁବିଧା ସୁଯୋଗମାନ ଆଦୌ ଚାହାନ୍ତି ନାହିଁ । ତାହାର କାରଣ ହେଲା- ଏସବୁ ସୁବିଧାସୁଯୋଗ ମିଳିବା ସଙ୍ଗେ ସଙ୍ଗେ ସେହି ଗ୍ରାମାଞ୍ଚଳରେ ତଥାକଥିତ ଶିକ୍ଷିତ ଲୋକମାନେ ଆସି ପହଞ୍ଚିଯିବେ; ତା'ପରେ ସେ ଅଞ୍ଚଳରେ ଧାନ ଚାଉଳର ଦରଦାମ୍ ବଢ଼ିଯିବ—ବାଡ଼ିରେ ପନିପରିବା ଗଣ୍ଡାଏ ରହିବ ନାହିଁ—କ୍ଷୀର ଟୋପାଏ ମିଳିବା କଷ୍ଟକର ହେବ—ଅଣ୍ଡା, କୁକୁଡ଼ା, ଛେଳି, ମେଣ୍ଢା ମିଳିବେ ନାହିଁ—ଏପରି କି ସେମାନଙ୍କର ଝିଅ ବୋହୂଙ୍କ ମାନମହତ ମଧ୍ୟ ବିପନ୍ନ ହୋଇ ପଡ଼ିବ, ଇତ୍ୟାଦି ଇତ୍ୟାଦି । ଶାନ୍ତ ନିରୁପଦ୍ରବ ଗ୍ରାମାଞ୍ଚଳରେ ଆଧୁନିକ ସଭ୍ୟତାର ସୁବିଧାସୁଯୋଗମାନ ବିଭ୍ରାଟ ଓ ବିପର୍ଯ୍ୟୟ ସୃଷ୍ଟି କରିବ–ଅଶୁଭ, ଅମଙ୍ଗଳଜନକ ହେବ—ସରଳ ନିଷ୍କପଟ ଜନସାଧାରଣଙ୍କର ମତିଗତି ବଦଳି ଯିବ । ତେଣୁ ସେମାନଙ୍କର ରାସ୍ତାଘାଟ, ବିଜୁଳିବତୀ ଆଦି ଲୋଡ଼ା ନାହିଁ । ଏହିସବୁ ସୁବିଧା- ସୁଯୋଗ ବ୍ୟତିରେକେ ସେମାନେ ଏକ ପ୍ରକାର ଭଲରେ ଅଛନ୍ତି ।

ବିଷୟଟି ମୋତେ ବେଶ୍ ଚିନ୍ତାକୁଳ କରି ପକାଇଛି । ଗ୍ରାମାଞ୍ଚଳରେ ଜନସାଧାରଣଙ୍କର ଏ ବିଚାର ହୁଏତ ଆଦୌ ଅମୂଳକ ନୁହେଁ । ସେମାନଙ୍କର ଏହି ଭୟ ଆଶଙ୍କା ବୋଧହୁଏ ବାସ୍ତବ ଅଭିଜ୍ଞତାପ୍ରସୂତ । ପ୍ରସଙ୍ଗକ୍ରମେ ଏଠାରେ ସୂଚାଇ ଦେବା ଦରକାର ଯେ ଆମ ରାଜ୍ୟରେ ଶତକଡ଼ା ପ୍ରାୟ ବୟାନବେ ଜଣ ଗ୍ରାମାଞ୍ଚଳର ଅଧିବାସୀ । ଆମର ସମୁଦାୟ ଜନସଂଖ୍ୟାରୁ ମାତ୍ର ସାଢ଼େ ଅଠର ଲକ୍ଷ ଲୋକ ସହରବାସୀ, ବାକି ଦୁଇ କୋଟିରୁ ଅଧିକ ଲୋକ ଗାଁ ଗଣ୍ଡାରେ ରହନ୍ତି । ଆଧୁନିକ ସଭ୍ୟତାର ସମସ୍ତ ସୁବିଧା ସୁଯୋଗ ଦେଶର ପ୍ରତ୍ୟେକ ସହରବାସୀଙ୍କ ସଦୃଶ ସେମାନଙ୍କର କାମ୍ୟ ହୋଇପାରେ—ହେବା ମଧ୍ୟ ଅନୁଚିତ ନହେଁ । କିନ୍ତୁ ଗ୍ରାମାଞ୍ଚଳକୁ ସେହି ସୁବିଧା ସୁଯୋଗ ବହନ କରି ନେଉଥିବା ବ୍ୟକ୍ତିମାନେ କିମ୍ବା ପରବର୍ତ୍ତୀ କାଳରେ ସେହି ସୁବିଧା-ସୁଯୋଗ- ଗୁଡ଼ିକୁ ନିୟନ୍ତ୍ରିତ ବା ପରିଚାଳିତ କରୁଥିବା କର୍ମଚାରୀମାନେ ସେମାନଙ୍କ ଦୃଷ୍ଟିରେ

ଶୋଷକ ଓ ଉପୀଡ଼କ । ଏଇମାନେ ହିଁ ପ୍ରକୃତରେ ସେମାନଙ୍କର ଭୟ ଓ ଆଶଙ୍କାର କାରଣ ।

ଘଣ୍ଟାଘାଟ, ବିଜୁଳିବତୀ, ଥାନା, ସ୍କୁଲ, ଡାକ୍ତରଖାନା ଇତ୍ୟାଦି ଆଧୁନିକ ଜୀବନର ବିଭିନ୍ନ ସୁବିଧା-ସୁଯୋଗଦାନକାରୀ ବା ନିୟନ୍ତ୍ରଣକାରୀ ସଂସ୍ଥା-ସମୂହ ସହିତ କେଉଁମାନେ ସମ୍ପୃକ୍ତ ? ବୋଲିବା ବାହୁଲ୍ୟ ଯେ, ସେମାନେ ରୁଷିଆ କିମ୍ବା ଆମେରିକାବାସୀ କୌଣସି ବିଦେଶୀ ନୁହଁନ୍ତି, ସେମାନେ ଆମରି ଲୋକ । ଆମରି ଭିତରୁ ବାହାରି ସେମାନେ ସ୍କୁଲ, କଲେଜ ଏବଂ ବିଭିନ୍ନ ବୈଷୟିକ ବା ପ୍ରଯୁକ୍ତି-ବିଦ୍ୟାର ଅନୁଷ୍ଠାନରେ ଶିକ୍ଷାଲାଭ କରିଛନ୍ତି— ସାର୍ଟିଫିକେଟ, ଡିଗ୍ରୀ, ଡିପ୍ଲୋମା ଆଦି ହାସଲ କରି ଇଞ୍ଜିନିୟର, ଡାକ୍ତର, କମାଣ୍ଡର, ଓଭରସିଅର, ସେକସନ ଅଫିସର, ଶାସନ ଓ ବିଭିନ୍ନ ବିଭାଗ କର୍ମଚାରୀ, ରେଞ୍ଜର, ଶିକ୍ଷକ, ଅଧ୍ୟାପକ, ଥାନାବାବୁ, ଗ୍ରାମ ସେବକ, କିରାଣୀ, ନାନା ଏକ୍‌ସଟେନ୍‌ସନ୍ ଅଫିସର ଆଦି ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ହୋଇ-ଛନ୍ତି । ଜାତିର ଉନ୍ନତି ପାଇଁ, ଜନସାଧାରଣଙ୍କ ମଙ୍ଗଳ ପାଇଁ ସେମାନଙ୍କ ନିଯୁକ୍ତି । ସେମାନେ ପୁଣି ଜନସାଧାରଣଙ୍କର ଶୋଷକ ଓ ଉପୀଡ଼କ ହେବେ କିପରି ? ଜାତିର ଶତ୍ରୁ ବୋଲି ବିବେଚିତ ହେବେ କାହିଁକି ?

ପ୍ରାୟ ପଚିଶ ତିରିଶ ବର୍ଷ ତଳର ଛାତ୍ରଜୀବନ କଥା ମନେ ପଡ଼ୁଛି । ସ୍କୁଲ କଲେଜରେ ପଢ଼ୁଥିଲା ବେଳେ କୌଣସି ଛୁଟିରେ ଆମେ ଯେତେବେଳେ ଆପଣା ଗ୍ରାମକୁ ଯାଉଥିଲୁଁ, ଗ୍ରାମର ବୁଢ଼ା ବୁଢ଼ୀ ପୁରୁଖା ଲୋକମାନେ ଆମକୁ ସହଜ ଭାବରେ ଗ୍ରହଣ କରିପାରୁ ନ ଥିଲେ—ଆମର କଥାବାର୍ତ୍ତା ଚାଲିଚଳଣି ପ୍ରତି ଏକ ପ୍ରକାର ଉନ୍ନାସିକତା ପ୍ରକାଶ କରୁଥିଲେ । ଏଥିରେ ସଙ୍କୀର୍ଣ୍ଣତାର ଆତିଶଯ୍ୟ ଥିଲା ସତ୍ୟ, ତଥାପି ଆମେମାନେ ଯେ ଏକ ଭିନ୍ନ ଗୋଷ୍ଠୀ ବା ସମ୍ପ୍ରଦାୟର ଲୋକ, ଗ୍ରାମର ଜନସାଧାରଣଙ୍କ ସହିତ ଆମେ ଯେ ଠିକ୍ ଖାପ ଖାଇ ପାରୁ ନାହୁଁ, ଏହା ସେମାନେ ତୁଣ୍ଡରେ ଫେଡ଼ି ନ କହିଲେ ମଧ୍ୟ ଚାହାଣିରେ ପ୍ରକାଶ କରି ଦେଉ-ଥିଲେ । ଏବେ ମଧ୍ୟ ମୋ ଜାଣିବାରେ ଏ ପରିସ୍ଥିତିର ବିଶେଷ ପରିବର୍ତ୍ତନ ଘଟି ନାହିଁ । ଆମର ସାଧାରଣ ଜନତା ଏବଂ ସ୍କୁଲ କଲେଜରେ ପାଠ ପଢ଼ିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଏକ ପ୍ରକାର ବିଭେଦର ପ୍ରାଚୀର ସେହିପରି ଦଣ୍ଡାୟମାନ ରହିଛି । କଥାବାର୍ତ୍ତା ଓ ଲେଖାଲେଖିରେ ଅଯଥା ଇଂରାଜୀଭାଷା ବ୍ୟବହାର କରି, ଚାଲିଚଳଣି ଓ ଆଚାର ବ୍ୟବହାରରେ ଦରକାର ନ ଥିଲେ ବି ପାଶ୍ଚାତ୍ୟ ନୀତି

ଅନୁସରଣ କରି ସାଧାରଣତଃ ଏହି ସ୍କୁଲ କଲେଜ ପଢ଼ୁଆ ଲୋକମାନେ ନିଜକୁ ଏକ ସ୍ୱତନ୍ତ୍ର ଶ୍ରେଣୀ ବା ଗୋଷ୍ଠୀ ହିସାବରେ ପ୍ରତିପାଦିତ କରୁଛନ୍ତି । ସ୍କୁଲ କଲେଜରେ ପାଠ ପଢ଼ି ନଥିବା ସାଧାରଣ ଜନତା ସେମାନଙ୍କ ଦୃଷ୍ଟିରେ ନୀଚ ଓ ନିର୍ବୋଧ । ସଂଖ୍ୟାରେ ମୁଷ୍ଟିମେୟ ହୋଇ ସେମାନେ ଏହି କୋଟି କୋଟି ଜନସାଧାରଣଙ୍କୁ ନିଜର ଅଧସ୍ତନ ବୋଲି ମନେ କରିଥାଆନ୍ତି । ଅବଶ୍ୟ ଏହା ମୂଳରେ ରହିଛି ଏକ ନିର୍ଦ୍ଦିଷ୍ଟ ଆର୍ଥନୀତିକ ଭୂମିକା; ମାତ୍ର ତାହା ଆମର ଏଠି ଆଲୋଚ୍ୟ ନୁହେଁ । ଏ ହତଭାଗା ଦେଶର ଜନସମାଜ ଜାତି, ବୃତ୍ତି, ଧର୍ମ-ସମ୍ପ୍ରଦାୟ, ଅର୍ଥନୀତି ଆଦି ଦିଗରୁ ତ ବହୁଧା ବିଭକ୍ତ ଥିଲା ! ଆଧୁନିକ ଯୁଗରେ ସ୍କୁଲ-କଲେଜରେ ପଢ଼ିଥିବା ଏବଂ ନ ପଢ଼ିଥିବା ବ୍ୟକ୍ତି ଭେଦରେ ପୁଣି ଦ୍ୱିଧା ବିଭକ୍ତ ହୋଇଗଲା । ଅସଂହତି, ବିଭାଜନୀକରଣ ଯେପରି ଏ ଜାତିର ଭାଗ୍ୟଲିପି !

ଏଠାରେ ଯୁକ୍ତି ହୋଇପାରେ ଯେ, ଦେଶରେ ଆଧୁନିକ ଶିକ୍ଷାର ସୁବିସ୍ତାର ସଙ୍ଗେ ସଙ୍ଗେ ଆମର ଅଧିକାଂଶ ଲୋକ ଶିକ୍ଷିତ ହୋଇଗଲେ, ଏହି ଶ୍ରେଣୀ-ବିଭାଗ ଆପେ ଆପେ ଲୋପ ପାଇଯିବ । କଥାଟି ଯୁକ୍ତିଯୁକ୍ତ ହେଲେ ବି ଅତ୍ୟନ୍ତ ଉଚ୍ଚାଶା-ପ୍ରଣୋଦିତ ବୋଲି ମନେ ହୁଏ । ସ୍ୱାଧୀନତା-ଲାଭର ବତିଶ ବର୍ଷ ପରେ ମଧ୍ୟ ଆମ ରାଜ୍ୟର ସାକ୍ଷର ଲୋକଙ୍କ ସଂଖ୍ୟା ଶତକଡ଼ା ପ୍ରାୟ ସତେଇଶ । ପୁଣି ମାଟ୍ରିକୁଲେସନ୍ ଏବଂ ତଦୂର୍ଦ୍ଧ୍ୱ ଶିକ୍ଷାଲାଭ କରିଥିବା ଲୋକଙ୍କ ସଂଖ୍ୟା ଆହୁରି ଊଣା । ଶତକଡ଼ା ପଞ୍ଚସ୍ତରୀ ବା ଶହେ ଜଣ ଲୋକ ସ୍କୁଲ କଲେଜରେ ପଢ଼ି ଶିକ୍ଷିତ ହେବା ପାଇଁ କେତେ ଶତାବ୍ଦୀ ଲାଗିଯିବ, କିଏ କହି ପାରିବ ?

ଆମର ଏହି ତଥାକଥିତ ଶିକ୍ଷିତ ବ୍ୟକ୍ତିମାନେ ସମାଜରେ ଏକ ସ୍ୱତନ୍ତ୍ର ଶ୍ରେଣୀ ସୃଷ୍ଟି କରିଛନ୍ତି ସତ୍ୟ, କିନ୍ତୁ ସେମାନେ ଜନସାଧାରଣଙ୍କର ଶୋଷକ ଓ ଉତ୍ପୀଡ଼କ ହୋଇଛନ୍ତି କି ନା, ବିଚାର କରି ଦେଖିବା କଥା । ମାର୍କସୀୟ ମତରେ ଯେ-କୌଣସି ଶ୍ରେଣୀ-ବିଭକ୍ତ ସମାଜରେ ଶୋଷଣ ତଥା ଶ୍ରେଣୀ-ସଂଘର୍ଷ ଅପରିହାର୍ଯ୍ୟ । ସମସ୍ତେ ନ ହେଲେ ବି, ଆମର ଅନେକ ସରକାରୀ ଅର୍ଦ୍ଧ-ସରକାରୀ ଓ ବେସରକାରୀ କର୍ମଚାରୀ ନାନା ବାଟରେ ଯେ ଲାଞ୍ଚ ମିଛରେ ମାତିଥାନ୍ତି, ଜନସାଧାରଣଙ୍କ ଉପରେ ଯେ ଅନ୍ୟାୟ, ଅତ୍ୟାଚାର କରିଥାଆନ୍ତି, ଗ୍ରାମାଞ୍ଚଳରେ ନିଜ ନିଜର ଉପସ୍ଥିତି ଦ୍ୱାରା ଯେ ବିଭ୍ରାଟ ବିପର୍ଯ୍ୟୟ ସୃଷ୍ଟି କରି ଥାଆନ୍ତି, ଏହା କେହି ଅସ୍ୱୀକାର କରି ପାରିବେ କି ? କେଇ ବର୍ଷ ତଳେ

ଭଦ୍ରକ ସବ୍‌ଡ଼ିଭିଜନର ବନ୍ୟାବିଧ୍ୱସ୍ତ ଧାମରା ଅଞ୍ଚଳରେ ଚୂଡ଼ା-ଗୁଡ଼, ଲୁଗାପଟା ଘେନି ଦଳେ ସରକାରୀ ଓ ଅର୍ଦ୍ଧସରକାରୀ କର୍ମଚାରୀ ରିଲିଫ୍ ବାଣ୍ଟିବା ପାଇଁ ଯାଇଥିଲେ । ଦୁଇ ତିନି ଦିନ ରହଣୀ ଭିତରେ ଆଡ଼ମ୍ବରପୂର୍ଣ୍ଣ ଖିଆପିଆ ଏବଂ ଅସୁନ୍ଦର ଅସୌଜନ୍ୟପୂର୍ଣ୍ଣ ଆଚରଣ ଦ୍ୱାରା ସେମାନେ ଗ୍ରାମ୍ୟ ଜୀବନରେ ବଡ଼ ଅସ୍ୱସ୍ତିକର ପରିସ୍ଥିତି ସୃଷ୍ଟି କରିଥିବାର ଏହି ଲେଖକ ଜାଣେ । ଅନ୍ୟ ଏକ ଘଟଣା ଆହୁରି ଗ୍ଳାନିକର । ପ୍ରାୟ ଆଠ ବର୍ଷ ତଳେ ଗ୍ରାମରେ ଗୋଟିଏ ମର୍ଡର କେସ୍ ହୋଇଥିଲା । ଥାନା ଲୋକମାନେ ଗ୍ରାମ ଭିତରେ ପଶି ଦୋଷୀ ନିର୍ଦ୍ଦୋଷ ଯାହାକୁ ପାଇଲେ, ଧରି ଗାଳିଗୁଲଜ କଲେ – ଠେଙ୍ଗା ପ୍ରହାର ଚଳାଇଲେ— ଥାନାକୁ ବାନ୍ଧି ଘେନିଗଲେ । ତା'ପରେ ଗ୍ରାମଭିତରୁ ଅନ୍ତଃସ୍ରୋତା ଫଲଗୁ ପରି ଟଙ୍କାର ପ୍ରଚ୍ଛନ୍ନ ସ୍ରୋତ ଛୁଟିଲା ଏବଂ ତହିଁରେ ଥାନା ଲୋକଙ୍କର ତଥା ମାମଲତକାରମାନଙ୍କର ହାତ ବେଶ୍ ଚିକ୍‌କଣ ହୋଇଗଲା । ସେହି ମାମଲତ-କାରମାନେ ପୁଣି ଅନ୍ୟ କେହି ନୁହଁନ୍ତି, ସ୍କୁଲ କଲେଜରେ ପାଠ ପଢ଼ିଥିବା ଗ୍ରାମାଞ୍ଚଳର ତଥାକଥିତ ନେତା ବା 'ଭଦ୍ରଲୋକ' ।

ଆଖିରେ ପଡ଼ିଲା ଭଳି ଏହିପରି ଦୃଷ୍ଟାନ୍ତ ଗୁରିଆଡ଼େ ମିଳିବ । ଯେଉଁ ଲୋକ ପାଠଶାଠ ପଢ଼ିଛି, ସେ ବେଶୀ ବୁଦ୍ଧିଆ, ବହୁତ ଫନ୍ଦିଫିକର ଜାଣେ, କଳା ଧଳା ଏପଟ ସେପଟ କରି ସେ ଟଙ୍କା କମେଇ ପାରେ—ଶିକ୍ଷିତ ଲୋକଙ୍କ ସମ୍ପର୍କରେ ସାଧାରଣତଃ ଏହିପରି ଏକ ଧାରଣା ଆମର ଜନତା ମନରେ ବଦ୍ଧମୂଳ ହୋଇଯାଇଛି । ଟଙ୍କା କମେଇ ନିଜର ବୈଷୟିକ ଉନ୍ନତି ସାଧନ କଲାବେଳେ ଶିକ୍ଷିତ ଲୋକେ ପାଞ୍ଚ ଆଗ କିଯାକ ପାଟିରେ ପୁରନ୍ତି, ଅପର ସ୍ୱାର୍ଥ ପ୍ରତି ନିଘା ଦିଅନ୍ତି ନାହିଁ ବୋଲି ବର୍ତ୍ତମାନ ଜନସାଧାରଣଙ୍କର ହୃଦ୍‌ବୋଧ ହୋଇଛି । ସ୍କୁଲ କଲେଜରେ ପଢ଼ି ନଥିବା ଅପାଠୁଆ ଲୋକେ ଯେ ଛନ୍ଦ କପଟ ଜାଣନ୍ତି ନାହିଁ—ଅପର ସ୍ୱାର୍ଥରେ ଆଞ୍ଚ ଆଣନ୍ତି ନାହିଁ, ତାହା ନୁହେଁ ; କିନ୍ତୁ ପ୍ରଶ୍ନ ହେଉଛି—ସମାଜରେ ପାଠୁଆ ଏବଂ ସାଧାରଣ ଅପାଠୁଆ ଲୋକଙ୍କର ଆଚରଣ କ'ଣ ଏକ ପ୍ରକାର ହେବ ? ଶିକ୍ଷିତ ଆଲୋକପ୍ରାପ୍ତ ବ୍ୟକ୍ତିମାନଙ୍କର ଆଉ ବୈଶିଷ୍ଟ୍ୟ ତାହା ହେଲେ କେଉଁଠି ?

କେବଳ ଗୁକିରୀ ପାଇଁ ନାଗରିକମାନଙ୍କୁ ତାଲିମ୍ ଦେବା ଅଥବା ବୈଷୟିକ ଉନ୍ନତି ପାଇଁ ଲୋକମାନଙ୍କୁ କୌଶଳ ଶିଖାଇବା ଶିକ୍ଷାର ଉଦ୍ଦେଶ୍ୟ

ନୁହେଁ । ଶିକ୍ଷାର ଅସଲ ଉଦ୍ଦେଶ୍ୟ ହେଉଛି--ନାଗରିକମାନଙ୍କୁ 'ମଣିଷ' କରି ଗଢ଼ିବା । ସେଥି ସକାଶେ ଶିକ୍ଷା ସହିତ ସଦାଚାରର ଘନିଷ୍ଠ ସମ୍ପର୍କ ରହିଛି । ଶିକ୍ଷିତ ହେବାର ଅର୍ଥ—ଜଗତର ଏକ ବା ଏକାଧିକ ବିଷୟରେ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ସଦାଚାରରେ ଭୂଷିତ ହେବା । କିନ୍ତୁ ଆମର ସାମ୍ପ୍ରତିକ ଶିକ୍ଷା ଏହି ସମ୍ପର୍କ ରକ୍ଷା ଦିଗରେ ଶୋଚନୀୟ ଭବରେ ପରାଭୂତ ହୋଇଛି । ଆଜିର ଶିକ୍ଷା ସହିତ ସଦାଚାରର କୌଣସି ସମ୍ପର୍କ ଥିଲା ପରି ଲାଗୁ ନାହିଁ । ବର୍ତ୍ତମାନ ଆମର ଅଧିକାଂଶ ଶିକ୍ଷାନୁଷ୍ଠାନ ସଦାଚାରର ପ୍ରେରଣା ଦେବା ଅବସ୍ଥାରେ ଅଛନ୍ତି କି ? ଆମର ଅଧିକାଂଶ ଛାତ୍ର-ଶିକ୍ଷକ-ଅଭିଭାବକ ସଦାଚାର ଶିଖିବା ଓ ଶିଖାଇବା ପରିସ୍ଥିତିରେ ଅଛନ୍ତି କି ? ସହଜ ଏବଂ ଯାବତୀୟ ଅସାଧୁ ଉପାୟ ଅବଲମ୍ବନ କରି ପରୀକ୍ଷାରେ ପାସ୍ କରିବା - ସ୍କୁଲ କଲେଜରେ ନାନାଦି ଗଣ୍ଡଗୋଳ, ସାଧାରଣ ଧନ ଅପବ୍ୟୟ କରିବା—ଶିକ୍ଷାନୁଷ୍ଠାନ ଭିତରେ ଏକପ୍ରକାର ମଉଜିଆ ବିଳାସ-ବ୍ୟସନପୂର୍ଣ୍ଣ ଜୀବନଯାପନ କରିବା ଆଜି ଏକ ସାଧାରଣ ଘଟଣା ବୋଲି ମନେ ହୁଏ । ଏହି ପରିସ୍ଥିତିରେ ତଥାକଥିତ ଶିକ୍ଷିତ ଲୋକେ ଛାତ୍ର ଜୀବନରେ ବା କର୍ମ ଜୀବନରେ ନିଜର ବୈଷୟିକ ଉନ୍ନତି ପାଇଁ ନାନାଦି ଫନ୍ଦିଫିକର, ଛନ୍ଦକପଟ କରିବାକୁ ପଶ୍ଚାତ୍‌ପଦ ହେଉ ନାହାନ୍ତି—ଜନସାଧାରଣଙ୍କ ଉପରେ ଶୋଷଣ ଉତ୍ପୀଡ଼ନ କରିବାକୁ କୁଣ୍ଠାବୋଧ କରୁ ନାହାନ୍ତି ।

ଉପରୋକ୍ତ ଶୋଷଣ-ଉତ୍ପୀଡ଼ନ ଦୃଶ୍ୟ ଓ ପ୍ରତ୍ୟକ୍ଷ । ଅଦୃଶ୍ୟ, ଅପ୍ରତ୍ୟକ୍ଷ ଭାବରେ ମଧ୍ୟ ଶିକ୍ଷିତ ଲୋକେ ସମାଜ ଉପରେ ଏକପ୍ରକାର ଶୋଷଣ ଚଳାଇ-ଥିବା ବିଷୟ ଏବେ ଅନେକେ ଅନୁଭବ କରିଲେଣି । ପ୍ରାଥମିକ ଶ୍ରେଣୀଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷାର ସବୁ ସ୍ତର ସକାଶେ ସରକାର ଆମର ଦରିଦ୍ର ରାଜକୋଷରୁ କୋଟି କୋଟି ଟଙ୍କା ବ୍ୟୟ କରୁଛନ୍ତି । ଏହି ବିପୁଳ ଅର୍ଥ ବିନି-ଯୋଗର ବିଶେଷ ସୁଫଳ ମିଳୁଛି କି ? ପ୍ରାଥମିକ, ମାଧ୍ୟମିକ ତଥା କେତେକ ବୈଷୟିକ ଶିକ୍ଷା ସକାଶେ ସରକାରୀ ତହବିଲରୁ ଅର୍ଥ ବ୍ୟୟ ଅନୁଚିତ ନୁହେଁ ; କାରଣ ଏଭଳି ଶିକ୍ଷାରେ ରାଷ୍ଟ୍ରର ପ୍ରୟୋଜନୀୟତା ରହିଛି । କିନ୍ତୁ ସକଳ ପ୍ରକାର ଉଚ୍ଚ ଶିକ୍ଷା ପାଇଁ ସର୍ବସାଧାରଣଙ୍କ ରାଜସ୍ୱ-ଧନ ଖର୍ଚ୍ଚ ହେବାର କୌଣସି କାରଣ ନାହିଁ । ଗାନ୍ଧିଜୀ ବରାବର ଏହାର ବିରୋଧ କରୁଥିଲେ । ସମ୍ପ୍ରତି ଜଣେ ଜଣେ ଏମ୍.ଏ., ଏମ୍.ଏସ୍.ସି. ଅଥବା ଜଣେ ଜଣେ ମେଡ଼ିକାଲ୍ ଗ୍ରାଜୁଏଟ୍,

ଇଞ୍ଜିନିୟରିଂ ଗ୍ରାଜୁଏଟ୍ ଉଠାଇବା ପାଇଁ ସରକାର ସାଧାରଣ ରାଜକୋଷରୁ ହଜାର ହଜାର ଟଙ୍କା ଖର୍ଚ୍ଚ କରନ୍ତି । କିନ୍ତୁ ଏହି ଶିକ୍ଷାପ୍ରାପ୍ତ ନାଗରିକମାନଙ୍କ ମଧ୍ୟରୁ ଅଧିକାଂଶ ସମାଜର କି ସାମୂହିକ କଲ୍ୟାଣ ସାଧନ କରନ୍ତି ?·ସମୁଦାୟ ରାଷ୍ଟ୍ରର କି ମହତ୍ କାର୍ଯ୍ୟ ସମ୍ପାଦନ କରନ୍ତି ? ଏହା ·ସତ୍ୟ ଯେ ସେମାନେ ସାଧାରଣତଃ 'ଆପେ ବଞ୍ଚିଲେ ବାପର ନାମ' ନୀତିରେ ଉଦ୍‌ବୁଦ୍ଧ ହୋଇ ନିଜର ସୁଖ-ସୁବିଧା ପାଇଁ, ବୈଷୟିକ ଉନ୍ନତି ପାଇଁ ଅନେକ କାର୍ଯ୍ୟ କରନ୍ତି । ବ୍ୟକ୍ତିର ଉନ୍ନତିରେ ଜାତିର ଉନ୍ନତି ବୋଲି ଯୁକ୍ତି ହୋଇପାରେ । କିନ୍ତୁ ଜାତୀୟତା ବା ସ୍ୱଦେଶପ୍ରେମର ଯେଉଁଠି ଘୋର ଅଭାବ, ସେଠାରେ ଏ ଯୁକ୍ତି କେତେ ଦୂର ଚଳେ ? ସମାଜ ଓ ରାଷ୍ଟ୍ରର ସମୂହ ମଙ୍ଗଳ ଲାଗି ସେମାନଙ୍କର ଦୃଷ୍ଟି ଥାଏ କି ? ଯେଉଁ ସର୍ବସାଧାରଣଙ୍କ ଧନରେ ସେମାନେ ଶିକ୍ଷାଲାଭ କରିବାକୁ ସମର୍ଥ ହୋଇ-ଛନ୍ତି, ଦେଶର ସେହି ଦୁଃସ୍ଥ ଦୁର୍ଗତ ଜନସାଧାରଣଙ୍କ ପ୍ରତି ନିଜର କିଛି କର୍ତ୍ତବ୍ୟ ଥିବାର ଅନୁଭବ କରନ୍ତି କି ? ପ୍ରତ୍ୟେକ ସଚେତନ ସମଦୃଷ୍ଟିସମ୍ପନ୍ନ ନାଗରିକ ପ୍ରକୃତ ଘଟଣା ଉପଲବ୍ଧି କରି ପାରୁଥିବେ ।

ତେଣୁ ଲୋକମାନଙ୍କୁ ଶିକ୍ଷିତ କରିବା ପାଇଁ, ବିଶେଷତଃ ଉଚ୍ଚ ଶିକ୍ଷା ଦେବା ପାଇଁ ରାଷ୍ଟ୍ର ଯେଉଁ ଜନସାଧାରଣଙ୍କ ଧନ ଖର୍ଚ୍ଚ କରୁଛି, ତାହାର ବିଶେଷ ପ୍ରତିଦାନ ମିଳୁଥିବାର ମନେ ହେଉ ନାହିଁ । ସମାଜ ଉପରେ—ଜନସାଧାରଣଙ୍କ ଉପରେ ଏହା ଏକ ପ୍ରକାର ଶୋଷଣ ବ୍ୟତୀତ ଆଉ କ'ଣ ହୋଇପାରେ ? ଆମର ସାଧାରଣ ଜନତା ଦୃଷ୍ଟିରେ ବର୍ତ୍ତମାନ ଶିକ୍ଷା ଏକ ଧର୍ମକର୍ମହୀନ ବ୍ୟାପାର ; ଶିକ୍ଷିତ ବ୍ୟକ୍ତିମାନେ ସାଧାରଣତଃ ଶୋଷକ ଓ ପରଗ୍ରାସୁଷ୍ଟ । ଆଜିର ଶିକ୍ଷା ରାଷ୍ଟ୍ରରୁ ଗ୍ରହଣ କରୁଛି ଅନେକ, କିନ୍ତୁ ରାଷ୍ଟ୍ରକୁ ଦାନ କରୁଛି ଖୁବ୍ କମ୍ । ସାଧାରଣତଃ ଆମର ଶିକ୍ଷିତ ବ୍ୟକ୍ତିମାନେ ସମାଜ ଉପରେ ଯେତିକି ଅଧିକାର ସାବ୍ୟସ୍ତ କରୁଛନ୍ତି--ସମାଜଠାରୁ ଯେତିକି ପରିମାଣରେ ଦାବୀ ହାସଲ କରୁଛନ୍ତି, ସେତିକି ପରିମାଣରେ ସମାଜ ପ୍ରତି ନିଜ ନିଜର କର୍ତ୍ତବ୍ୟ କରୁ ନାହାନ୍ତି—ଦାୟିତ୍ୱ ତୁଲାଉ ନାହାନ୍ତି । ବର୍ତ୍ତମାନ ଆମର ସକଳ ପ୍ରକାର ଜାତୀୟ ଦୁର୍ଗତିର ଏହା ବୋଧହୁଏ ଗୋଟିଏ ମୁଖ୍ୟ କାରଣ । ସାମ୍ପ୍ରତିକ ଶିକ୍ଷାର ସମୁଦ୍ର-ମନ୍ଥନରୁ କିଛି ଅମୃତ ସଙ୍ଗେ ସଙ୍ଗେ ଏହି ଗରଳ ବାହାରିଛି ବୋଲି ଅସ୍ୱୀକାର କରିହେବ ନାହିଁ ।

କିନ୍ତୁ ଏ ଗରଳ ଆମର ଆଦୌ ଅଣାୟତ୍ତ ନୁହେଁ । ନୀଳକଣ୍ଠଙ୍କ ସଦୃଶ ଆମେ ଅନାୟାସରେ ଏ ଗରଳକୁ ହଜମ ବା ସୁନିୟନ୍ତ୍ରିତ କରି ଦେଇପାରିବା, ଯଦି ଆମେ ଉପଯୁକ୍ତ ତ୍ୟାଗ, ତପସ୍ୟା ଏବଂ ଶକ୍ତି ସାହସର ଅଧିକାରୀ ହେବା—ଯଦି ଆମେ ଆମର ତୃତୀୟ ନୟନ ସର୍ବଦା ଉନ୍ମୀଳିତ କରି ରଖିବା !



## ସହାୟକ ରଚନାବଳୀ


୧ । ଭାରତୀୟ ଶିକ୍ଷା—ଅଧ୍ୟାପକ ସର୍ବେଶ୍ୱର ଦାସ, ଗ୍ରନ୍ଥ ମନ୍ଦିର, କଟକ-୨ ଓ ବ୍ରହ୍ମପୁର-୧ (ଦ୍ୱିତୀୟ ସଂସ୍କରଣ ୧୯୭୧)

୨ । ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଡ଼ା—ଡକ୍ଟର ଦେବକାନ୍ତ ମିଶ୍ର, ହିମାଂଶୁ ପ୍ରକାଶନ, ବାଖରାବାଦ, କଟକ-୨ (୧୯୮୯)

3. The Report of the University Education Commission, Vol. I, Govt. of India Press, Simla (1950)

4. Report of the Education Commission (Kothari Commission), (1966).

5. The University News, Journal of the Association of Indian Universities, New Delhi (February 8, 1986).

6. Journal of Higher Education, University Grants Commission, New Delhi. Vol. 7-Nos. 1-2 (1981)

7. The Encyclopaedia of Education, Vol. IX, The Macmillan Company and the Free Press, U.S.A. (1971).


